# ଆଧୁନିକ
# ଓଡ଼ିଆ କାବ୍ୟ-ସାହିତ୍ୟ



ପ୍ରକାଶକ

ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର

# ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟ

( ୭-୪-୮୧ ଓ ୭-୪-୮୧ ଦୁଇଦିନବ୍ୟାପୀ ବାରିପଦାଠାରେ ଏକାଡେମୀ ପକ୍ଷରୁ ଅନୁଷ୍ଠିତ ଆଲୋଚନା ଚକ୍ରରେ ପଠିତ ପ୍ରବନ୍ଧାବଳୀ )

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୭୫୧୦୧୪

ପ୍ରଥମ ପ୍ରକାଶ : ୧୯୮୧

ମୁଦ୍ରଣ :

ବିବରଣୀ ପ୍ରକାଶନୀ, ଭୁବନେଶ୍ୱର-୧୪

ମୂଲ୍ୟ : ଛଅଟଙ୍କା

**ADHUNIKA ORDIYA KAVYA SAHITYA**

PUBLISHED BY : ORISSA SAHITYA AKADEMI
BHUBANESWAR-751014

FIRST PUBLICATION : 1981

PRINTED AT : BIBARANI PRAKASHANI
Bhubaneswar-14

PRICE : RUPEES SIX

# ସୂଚୀପତ୍ର

# ମୁଖବନ୍ଧ

ଚଳିତବର୍ଷ ଅପ୍ରେଲ ୬ ଓ ୭ ତାରିଖରେ ବାରିପଦାଠାରେ ଓଡ଼ିଶା ସାହିତ୍ୟ ଅକାଦମୀ ଆନୁକୂଲ୍ୟରେ, ଆଧୁନିକ କବିତା ସମ୍ପର୍କରେ ଏକ ଆଲୋଚନା-ଚକ୍ର ଦୁଇଦିନ ବ୍ୟାପି ଅନୁଷ୍ଠିତ ହୋଇଥିଲା । ଆଧୁନିକ କବିତାର ମୂଲ୍ୟାଙ୍କନ ଓ ତାହାର ନିୟାମକ ସମ୍ପ୍ରତି ଯେପରି ବିଭ୍ରାନ୍ତିକର ସ୍ତରରେ ରହିଛି, ଏ ପ୍ରକାର ଆଲୋଚନା-ଚକ୍ରର ସଂଯୋଜନା ତାହାର ପୂର୍ଣାଙ୍ଗର ଭୂମି ଉପରେ ଆଲୋକପାତ ଦିଗରେ ବହୁ ପରିମାଣରେ ସହାୟକ ହେବ । ଏହା ହିଁ ଥିଲା ଆଲୋଚନା-ଚକ୍ରର ଅଭିପ୍ରାୟ । ଏଥିରେ କେତେକ ପ୍ରତିଷ୍ଠିତ କବି ଓ ସମାଲୋଚକ ଯୋଗଦାନ କରିଥିଲେ । ସେମାନଙ୍କ ମଧ୍ୟରୁ କେତେକ ସୁଲିଖିତ ପୂର୍ଣ୍ଣାଙ୍ଗ ପ୍ରବନ୍ଧମାନ ଏହି ଆଲୋଚନା-ଚକ୍ରରେ ପାଠ କରିଥିଲେ । ସେହି ପ୍ରବନ୍ଧ ସବୁ ଏଠାରେ ସଙ୍କଳିତ ହୋଇଅଛି । ଏହି ପ୍ରବନ୍ଧ ଗୁଡ଼ିକରେ ଅଧ୍ୟୟନ, ଅଧ୍ୟବସାୟ, ମନନ ଓ ଚିନ୍ତନର ସ୍ୱାକ୍ଷର ସୁସ୍ପଷ୍ଟ । ଆଧୁନିକ ଓଡ଼ିଆ କବିତାର ଆଲୋଚକମାନଙ୍କ ପକ୍ଷରେ ଏହା ବିଶେଷ ଭାବରେ ଉପଯୋଗୀ ହେବ । ସେହି ଉଦ୍ଦେଶ୍ୟରେ ସେହି ପ୍ରବନ୍ଧ ଗୁଡ଼ିକୁ ଏକ ଗ୍ରନ୍ଥାକାରରେ ପ୍ରକାଶ କରାଯାଇଅଛି । ପ୍ରବନ୍ଧ ଗୁଡ଼ିକରେ ସନ୍ନିବିଷ୍ଟ ତଥ୍ୟ ଓ ସେଥିରୁ ଆହୃତ ସିଦ୍ଧାନ୍ତ, ଏକାନ୍ତ ଭାବରେ ଲେଖକମାନଙ୍କର ନିଜସ୍ୱ । ସେସବୁ ଓଡ଼ିଆ ସାହିତ୍ୟ ଅକାଦମୀର ସିଦ୍ଧାନ୍ତ ରୂପେ ଗୃହୀତ ହେବା ଉଚିତ ନୁହେଁ ।

ସାମ୍ପ୍ରତିକ ଯନ୍ତ୍ରଣା-ଜର୍ଜରିତ କାଳର ମାନସଭଙ୍ଗୀ ଓ ଅଭିଜ୍ଞତାର ପରିପ୍ରକାଶ ପାଇଁ, କାବ୍ୟସାହିତ୍ୟର ବିକାଶ ପର୍ଯ୍ୟାୟରେ ସ୍ୱାଭାବିକ ଭାବରେ କବିତାର ଆଙ୍ଗିକ ଓ ଆତ୍ମିକରେ ମଧ୍ୟ ଆସିଛି ପରିବର୍ତ୍ତନ । କିନ୍ତୁ ମୋଟା ମୋଟି ଭାବରେ କହିଲେ, ସାମ୍ପ୍ରତିକ

କବିତାକୁ ଜନମାନସ ଓ ତାହାର ହୃଦୟାବେଗରେ ନିକଟତର କରିବା ପାଇଁ, ସୁବିପୁଳ ଉଦ୍ୟମ ହୋଇଥିଲେ ହେଁ, ଏଥିରେ ଦୁର୍ବୋଧତା, କ୍ଲିଷ୍ଟତା ଓ ଅସ୍ପଷ୍ଟତା ପ୍ରଭୃତି ବହୁ ଅଭିଯୋଗ ଶୁଣା ଯାଉଥାଏ । ଉପ ପରିବର୍ତ୍ତେ ଏଥିରୁ ମୁଖ୍ୟତଃ ଯାହା ମିଳିଥାଏ, ତାହା ହତାଶା । ସାମ୍ପ୍ରତିକ କବିମାନେ ସୁଦ୍ଧା ଏ ପ୍ରକାର ଅଭିଯୋଗ ଅସ୍ୱୀକାର କରନ୍ତି ନାହିଁ ।

ଆଳଙ୍କାରିକ ବାମନ ପ୍ରଭୃତିଙ୍କ କାଳରୁ ଦୁର୍ବୋଧତା କାବ୍ୟର ଏକ ଦୋଷ ରୂପେ ସର୍ବଥା ଗୃହୀତ ହୋଇ ଆସିଛି । ମଧ୍ୟଯୁଗୀୟ କାବ୍ୟରେ ମଧ୍ୟ ଥିଲା ଦୁର୍ବୋଧତା । ମାତ୍ର ଏ ଦୁର୍ବୋଧତା ଥିଲା ଆଭିଧାନିକ । କିନ୍ତୁ ସାମ୍ପ୍ରତିକ କାବ୍ୟ କବିତାର ଦୁର୍ବୋଧତା ବ୍ୟଞ୍ଜନାତ୍ମକ । ମଧ୍ୟଯୁଗୀୟ କାବ୍ୟର ବାଚ୍ୟାର୍ଥ ହୃଦୟଙ୍ଗମ କରିବା ଥିଲା କଷ୍ଟକର, କିନ୍ତୁ ସାମ୍ପ୍ରତିକ କବିତାର ପ୍ରତୀୟମାନ ଅର୍ଥ ଉପଲବ୍‌ଧି କରିବା କଠିନ ।

ସୁନ୍ଦରୀ ରମଣୀର ଶରୀର-ସୌଷ୍ଠବ ଛଡ଼ା ଥାଏ ମଧ୍ୟ ଆଉ ଏକ ଅନିର୍ବଚନୀୟ ଲାବଣ୍ୟଶୋଭା, ଯାହା ସେମାନଙ୍କ ବ୍ୟକ୍ତିତ୍ୱକୁ ପ୍ରକାଶ କରିଥାଏ । ସେହିପରି ମହାକବି ମାନଙ୍କର ପଦରଚନାରେ ଏପରି କିଛି ପ୍ରକାଶ ପାଇଥାଏ ଯାହା ତାହାର ବାଚ୍ୟାର୍ଥକୁ ଅତିକ୍ରମ କରି ପାଠକର ଚିତ୍ତରେ ରସୋତ୍ତୀର୍ଣ୍ଣ ହୋଇଥାଏ । ଅର୍ଥାତ୍ ବାଚ୍ୟାର୍ଥ ଅପେକ୍ଷା ପ୍ରତୀୟମାନ ଅର୍ଥ ହିଁ କାବ୍ୟରେ ପ୍ରଧାନ । ବାଚ୍ୟାର୍ଥ ଯେଉଁ-ଠାରେ ନିଜକୁ ଗୌଣ କରି ପ୍ରତୀୟମାନ ଅର୍ଥକୁ ପ୍ରଧାନ ଭାବରେ ପ୍ରକାଶ କରେ, ସେହି ନୂତନ ବସ୍ତୁଟି ହିଁ ଧ୍ୱନି । ଏହାର ଅଭାବରେ ଗଦ୍ୟ ବା କବିତା କୌଣସିଟି ରସୋତ୍ତୀର୍ଣ୍ଣ ହେବା ସମ୍ଭବ ନୁହେଁ ।

କବିତା ପ୍ରାଚୀନ ହେଉ, ମଧ୍ୟଯୁଗୀୟ ହେଉ ଅଥବା ଆଧୁନିକ ହେଉ, ଏହି ରସ ଓ ଧ୍ୱନି ହେଲା ତାହାର ପ୍ରାଣ । ଆଧୁନିକ କବିତା,

ନିଜପାଇଁ ଅବଶ୍ୟ ଏକ ନୂତନ ରସ ଓ ଧ୍ୱନି ସୃଷ୍ଟି କରିବାପାଇଁ ଚେଷ୍ଟିତ । ସେମାନେ ସେ ଦିଗରେ କିଏ କେଉଁ ପରିମାଣରେ ସଫଳ ହୋଇଛନ୍ତି, ଏହା ତାହାର ଆଲୋଚନାର ପରିସର ନୁହେଁ । ଏଥିରେ ସନ୍ନିବିଷ୍ଟ କେତେକ ପ୍ରବନ୍ଧ ତାହା ଉପରେ ଆଲୋକପାତ କରିବାରେ ସମର୍ଥ ହୋଇଅଛି । ତାହାହିଁ ଆମ୍ଭମାନଙ୍କ ପକ୍ଷରେ ଆନନ୍ଦର ବିଷୟ ।

ଏହି ସଂକଳନଟି ସାଧାରଣ ପାଠକ, ଆଲୋଚକ ଓ ଗବେଷକମାନଙ୍କଦ୍ୱାରା ଆଦୃତ ହେଲେ ଆମ୍ଭମାନଙ୍କର ଶ୍ରମ ସାର୍ଥକ ହେବ ।

ସୁରେନ୍ଦ୍ର ମହାନ୍ତି
ସଭାପତି

ତା ୨୮।୧୦।୮୧ ଖ୍ରୀ

ଓଡ଼ିଶା ସାହିତ୍ୟ ଏକାଡେମୀ

**ବାରିପଦାଠାରେ ଅନୁଷ୍ଠିତ "ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟ ବିଷୟକ ଆଲୋଚନା-ଚକ୍ର ଉପଲକ୍ଷେ ସମ୍ପାଦକଙ୍କ ଭାଷଣର କିୟଦାଂଶ ।**

ଅତ୍ୟନ୍ତ ଆନନ୍ଦ ଓ ଗୌରବର କଥା ଯେ, ଆଜ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ବାରିପଦା ଠାରେ "ଆଧୁନିକ କାବ୍ୟ ସାହିତ୍ୟ" ଉପରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହେଉଛି । ସେଥି-ପାଇଁ ମୁଁ ପ୍ରଥମେ ଏହି କାର୍ଯ୍ୟକ୍ରମରେ ଯୋଗଦାନ କରିଥିବା ଆମର ବରେଣ୍ୟ ମୁଖ୍ୟ ଅତିଥି ଓ ଉଦ୍‌ଘାଟକ, "ଶାନ୍ତିଶିଖା" "ଘୁମର ଛୁଟା" "କଞ୍ଚିତ", "ଅଲେଡ଼ା ଲେଡ଼ା" ପ୍ରଭୃତି ଏବଂ ପରିଶେଷରେ "ଅବାନ୍ତର" ପରି ଅନବଦ୍ୟ କୃତିର ସ୍ରଷ୍ଟା ଶ୍ରୀଯୁକ୍ତ ପଟ୍ଟନାୟକଙ୍କୁ ଏକାଡେମୀ ତରଫରୁ ଓ ମୋ ନିଜ ତରଫରୁ ଧନ୍ୟବାଦ ଅର୍ପଣ ଓ କୃତଜ୍ଞତା ଜ୍ଞାପନ କରୁଛି । ତା' ଛଡ଼ା, ଆଲୋଚନା ଚକ୍ରରେ ଅଂଶ-ଗ୍ରହଣ କରିବାକୁ ଏଠାରେ ସମବେତ ହୋଇଥିବା ବରିଷ୍ଠ ସାହିତ୍ୟିକ ବୃନ୍ଦଙ୍କୁ ମଧ୍ୟ ଧନ୍ୟବାଦ ଅର୍ପଣ କରୁଛି ।

୨. ଏଠାରେ ସାହିତ୍ୟ ଏକାଡେମୀର ସେହି ଆଭିମୁଖ୍ୟ ଓ ଲକ୍ଷ ସମ୍ବନ୍ଧରେ ଆପଣ ମାନଙ୍କୁ କିଞ୍ଚିତ୍ ସୂଚନା ଦେବା ଉଚିତ୍ ହେବ ବୋଲି ମନେ କରୁଛି । ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ସାଧନ, ସାହିତ୍ୟରେ ଉଚ୍ଚ ମାନର ପ୍ରବର୍ତ୍ତନ, ସାହିତ୍ୟ ଅନୁଷ୍ଠାନ ଓ ସାହିତ୍ୟିକ କାର୍ଯ୍ୟକଳାପ କ୍ଷେତ୍ରରେ ସମନ୍ୱୟ ସ୍ଥାପନ, ଏବଂ ରାଜ୍ୟରେ ସାଂସ୍କୃତିକ କ୍ଷେତ୍ରରେ ଐକ୍ୟ ଓ ସମନ୍ୱୟ ସ୍ଥାପନ ଓଡ଼ିଶା ସାହିତ୍ୟ ଏକାଡେମୀର ମୂଖ୍ୟଲକ୍ଷ । ଏହି ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସାଧନ ଢଙ୍ଗରେ ଏକାଡେମୀ ବିଭିନ୍ନ କାର୍ଯ୍ୟକ୍ରମ ପରିଚାଳନା କରନ୍ତି । ସାହିତ୍ୟିକ ବ୍ୟକ୍ତିବିଶେଷ,

ସାହିତ୍ୟକ ଓ ସାଂସ୍କୃତିକ ଅନୁଷ୍ଠାନ ଏବଂ ବିଶ୍ୱବିଦ୍ୟାଳୟ ଗୁଡ଼ିକ ମଧ୍ୟରେ ସମନ୍ୱୟ ସ୍ଥାପନ, ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମ ଗ୍ରହଣ, ସାହିତ୍ୟ ସଭା, ଆଲୋଚନା ଚକ୍ର, ଲେଖକ କର୍ମଶାଳା ଓ ପୁସ୍ତକ ପ୍ରଦର୍ଶନୀର ଆୟୋଜନ, ଉଲ୍ଲେଖ ଯୋଗ୍ୟ ସାହିତ୍ୟକୃତି ପାଇଁ ପୁରସ୍କାର ଓ ଉପାୟନ ପ୍ରଦାନ, ଓଡ଼ିଆ ଭାଷା ଓ ସାହିତ୍ୟରେ ଗବେଷଣା ଓ ତାର ପ୍ରସାର, ପ୍ରାଚୀନ ଲେଖକ ମାନଙ୍କର ରଚନା ସଙ୍କଳନ ଓ ସେମାନଙ୍କର ରଚନା ଓ ଜୀବନୀ ସମ୍ପର୍କରେ ପୁସ୍ତକ ପ୍ରକାଶନ ଉଲ୍ଲେଖଯୋଗ୍ୟ ସାହିତ୍ୟକୃତିର ଅନୁବାଦ ପ୍ରକାଶନ, ଅଭିଧାନ, ଜ୍ଞାନ କୋଷ, ପାରିଭାଷିକ ଅଭିଧାନ, ଗ୍ରନ୍ଥସୂଚୀ ଏବଂ ଦୁଷ୍ପ୍ରାପ୍ୟ ପୁସ୍ତକ ଓ ପତ୍ରିକାର ପ୍ରକାଶନ ବା ପୁନର୍ମୁଦ୍ରଣ, ଓଡ଼ିଆ ଓ ଓଡ଼ିଶାରେ ପ୍ରଚଳିତ ଅନ୍ୟାନ୍ୟ ଲିପିର ଉନ୍ନତି ସାଧନ, ଲୋକଗୀତ ଓ ଲୋକକାହାଣୀ ସଂକଳନ ଓ ତାର ପ୍ରକାଶନ, ବ୍ୟକ୍ତିବିଶେଷ ସାହିତ୍ୟକ ମାନଙ୍କୁ ପୁସ୍ତକ ପ୍ରକାଶନ ନିମନ୍ତେ ସାହାଯ୍ୟ ପ୍ରଦାନ ଏବଂ ଦୁଃସ୍ଥ ସାହିତ୍ୟକ ମାନଙ୍କୁ ସାହାଯ୍ୟ ପ୍ରଦାନ ପ୍ରଭୃତି ଏକାଡ଼େମୀ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ।

୩. ସାଂସ୍କୃତିକ ସମନ୍ୱୟ ଓ ଐକ୍ୟ ସ୍ଥାପନ ଦିଗରେ ଉଦ୍ୟମ ସ୍ୱରୂପ ଏକାଡ଼େମୀ ରାଜ୍ୟର ବିଭିନ୍ନ ଅଞ୍ଚଳରେ ସେମାନଙ୍କ ଦ୍ୱାରା ଆୟୋଜିତ ବିଭିନ୍ନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବାକୁ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି । ୧୯୮୦-୮୧ ମସିହାରେ ଭୁବନେଶ୍ୱର ଛଡ଼ା କଟକ, କେନ୍ଦୁଝର ଓ ଫୁଲବାଣୀଠାରେ ପୁସ୍ତକ ପ୍ରଦର୍ଶନୀର ଆୟୋଜନ କରାଯାଇଥିଲା । ଫୁଲବାଣୀ ଠାରେ ଆଧୁନିକ ଉପନ୍ୟାସ ଓ ଗଳ୍ପ ସାହିତ୍ୟ ଶୀର୍ଷକ ଆଲୋଚନା ଚକ୍ର ସଂଗଠିତ କରାଯାଇଥିଲା । ଭବିଷ୍ୟତରେ ଅନ୍ୟାନ୍ୟ ଅଞ୍ଚଳରେ ବିଭିନ୍ନ ଯୋଜନା ଗୁଡ଼ିକ କାର୍ଯ୍ୟକାରୀ କରିବାର ପରିକଳ୍ପନା ରହିଛି ।

୪. ସଜ୍ଜନ ମଣ୍ଡଳୀ । ଏହି ସଂସ୍କୃତି ସମୃଦ୍ଧ ଜିଲ୍ଲାରେ ଆଜି "ଆଧୁନିକ କାବ୍ୟ ସାହିତ୍ୟ" ଶୀର୍ଷକ ଆଲୋଚନା ଚକ୍ର ସଂଗଠିତ କରି ପାରିଥିବାରୁ ଆମେମାନେ ଅତିଶୟ ଆନନ୍ଦିତ । ଏ ଜିଲ୍ଲା ଓ ଅଞ୍ଚଳର

ତରୁଣ ପ୍ରତିଭା ଓ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକ ଏହା ଦ୍ୱାରା ଅନୁପ୍ରାଣିତ ଓ ଉଦ୍‌ବୁଦ୍ଧ ହେବେ ବୋଲି ଆମର ବିଶ୍ୱାସ ।

୫. 'କାବ୍ୟ' 'କରୁଣା'ରୁ ଝର ପଢ଼ିଥିଲି କି ନା ମୁଁ ଜାଣିନାହିଁ ବା କହିବାକୁ ଯାଉନାହିଁ । ଏହା ଛନ୍ଦ ଓ ରାଗମୟତାରେ କେବେ ଓ କାହିଁକି ଆମୃତ ହୋଇଥିଲା, ପୁଣି କେବେ ଓ କାହିଁକି ସେଥିରୁ ନିର୍ମୋକ ପରିହାର କଲା, ମୁଁ ସେ ବିଷୟରେ କହୁନାହିଁ । କିନ୍ତୁ ଗୋଟିଏ କଥା ସତ ଯେ, ବୈଦିକ ଯୁଗର ପ୍ରକୃତିର ଉଦ୍ଦିଷ୍ଟ ଜୟଗାନ ଓ ବନ୍ଦନା ଠାରୁ, ୮ମରୁ ୧୩ଶ ଶତାବ୍ଦୀର ବୌଦ୍ଧଗାନ ଓ ଦୋହାର ବିଭୁଦ୍ଧୋକ୍ତି ସଂଧ୍ୟା ଭାଷାର ରୂପକ ଶୈଳୀ ଠାରୁ ମଧ୍ୟଯୁଗର ଭାଷାର ଭୂଷାର ପ୍ରଲେପ ଓ ଆସ୍ତରଣ ଆଉ ଛନ୍ଦ ବିଳାସ ଠାରୁ, ପ୍ରାକ୍ ସ୍ୱାଧୀନତା ଯୁଗର ପ୍ରକାଶ ଭଙ୍ଗୀର ସରଳତା ଓ ଛନ୍ଦମୁକ୍ତତା ଠାରୁ ସଂପ୍ରତିକ କାଳ ପର୍ଯ୍ୟନ୍ତ ଏହା ସମସାମୟିକ ପରିସ୍ଥିତି ସମାଜ ତଥା ମାନବର ମାନସ ସତ୍ତାର ଏକ ପ୍ରତିବିମ୍ବ ।

୬. ଆଦିମ ସମାଜର ମଣିଷ ସମକ୍ଷରେ ଥିଲା କେବଳ ମଣିଷ ଓ ପ୍ରକୃତି ଜନିତ ସଂଘର୍ଷର ସମସ୍ୟା । ଏହି ଅବସ୍ଥାରେ ଅଲୌକିକ କୌଶଳ ଅବଲମ୍ବନ ଦ୍ୱାରା ବସ୍ତୁ ସତ୍ତା, ଉତ୍ପାଦନ, ରୋଗ ଓ ଭୋଗ ଇତ୍ୟାଦିର ଅଦୃଶ୍ୟ ଶକ୍ତି ଗୁଡ଼ିକୁ ପ୍ରଭାବିତ କରିବାର ଚେଷ୍ଟା ଅର୍ଥାତ୍ ଐନ୍ଦ୍ରଜାଲିକ ଶକ୍ତିଦ୍ୱାରା ଘଟଣାବଳୀକୁ ପ୍ରଭାବିତ କରିବା ସମାଜରେ ସୃଜନଶୀଳ କର୍ମ ପ୍ରେରଣା ବା କ୍ରିୟାଶୀଳତାର ଉତ୍ସ ଥିଲା । କୃଷି ଭିତ୍ତିକ ସମାଜରେ କର୍ମ ବିଭାଗର ପ୍ରଚଳନ ଆରମ୍ଭ ହେବା ପରେ ଏବଂ ଫଳରେ ସମାଜରେ ବିଭିନ୍ନ ଆନୁସଙ୍ଗିକ ନୂତନ ବିଶ୍ୱାସ, ଉତ୍ସବ, ଅନୁଷ୍ଠାନ, ବିଧାନ, ବିଧି ନିଷେଧର ପ୍ରବର୍ତ୍ତନ ହେବା ପରେ ଜନ ଗୋଷ୍ଠୀର ମାନବ ସତ୍ତାର ବିଭକ୍ତି କରଣ ପ୍ରକ୍ରିୟା ଆରମ୍ଭ ହୋଇଥିଲା —ଉତ୍ପାଦନରେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରୁଥିବା ଗ୍ରାମ୍ୟ-ଗୋଷ୍ଠୀ ଓ ଉତ୍ପନ୍ନ ଦ୍ରବ୍ୟ, ଭୋଗକାରୀ ନାଗରିକ ଗୋଷ୍ଠୀ – ଏକ ଦୁଇ ବିଭାଗ, ଲୋକ ସ୍ତର ଓ ଅଲୋକସ୍ତର ବା ପଲ୍ଲୀସ୍ତର ଓ 'ପୁର' ସ୍ତର । ଘୋଷ ବା ବ୍ରଜ, ପାଲି ବା ପାଲିଘୋଷ ଗ୍ରାମ ବା କ୍ଷେତ, ପତ୍ତନ, ନଗର ବା

ସୂର ଇତ୍ୟାଦିର ବିକାଶ, ପାର୍ଥକ୍ୟ ଓ ପରିକଳ୍ପନା ସମ୍ବନ୍ଧରେ ମହାଭାରତ ବାୟୁପୁରାଣ ଭାଗବତ ପୁରାଣ, ଅଗ୍ନି ପୁରାଣ, ବୃହଦାରଣ୍ୟକ ଉପନିଷଦ ଓ ବିରାହ ପୁରାଣ ଇତ୍ୟାଦିରେ ବର୍ଣ୍ଣନା ରହିଛି ।

୭. ଶ୍ରମ ବିଭାଗ ପରେ ପ୍ରତ୍ୟକ୍ଷ ହେଲା ମଣିଷ-ମଣିଷ ମଧ୍ୟସ୍ଥ ସଙ୍ଘର୍ଷର ସମସ୍ୟା - ମାନବ ମାନସ ସତ୍ତ୍ୱରେ ଅନ୍ତର୍ଗଣ ଦ୍ୱନ୍ଦ୍ୱ ଓ ବିଘଟନ ବାଧାପ୍ରାପ୍ତ ପ୍ରବଣତା ଓ ବିଗ୍ରହ - ଯାହା ଜାତିର ଭାଷା, କାହାଣୀ, କିମ୍ବଦନ୍ତୀ ଓ ଧର୍ମ ଇତ୍ୟାଦିକୁ ଆଶ୍ରୟ କରି ଏକ ସାଙ୍କେତିକ ଭିତ୍ତି ବା ପ୍ରତୀକ ଧର୍ମର ଅବଲମ୍ବନରେ ଆତ୍ମପ୍ରକାଶ କଲା । ଏହି ଆତ୍ମପ୍ରକାଶ ଏକ ପକ୍ଷରେ ସାମୂହିକ ମାନସ ସତ୍ତ୍ୱର ପ୍ରବଣତା, ସମ୍ବେଦନା, ଅନୁଭୂତି, ଆକାଙ୍କ୍ଷା ପ୍ରବୃତ୍ତି ଓ ପରିଣତିର ଚିହ୍ନ ବହନକାରୀ ଏକ ପ୍ରକାରର Participation mystique । ଅପର ପକ୍ଷରେ ପରିସ୍ଥିତିକୁ ପ୍ରେୟ ବା ବାଞ୍ଛିତ ଦିଗରେ ବାହିନେବା ପାଇଁ, ନୂତନ ପୃଥିବୀ ଓ ନୂତନ ଜଗତ ସୃଷ୍ଟି କରିବାର ବାର୍ତ୍ତାବହନକାରୀ ଏକ ସାମୂହିକ ଅଥଚ ମାନବୋତ୍ତର ମାନସ ସତ୍ତ୍ୱର ସମ୍ବେଦନ ବା ଦୂରଦୃଷ୍ଟି ରୂପୀ ସାମୂହିକ ଚିହ୍ନ ବା Collective Representation । ଏହି ଅବସ୍ଥାରେ ସ୍ୱାଭାବିକ ଉପାୟରେଅଲୌକିକ ଦୈବ ବା ଅଦୃଶ୍ୟ ଶକ୍ତିକୁ ପ୍ରଭାବିତ କରିବାର ଅର୍ଥାତ୍ ଐନ୍ଦ୍ରଜାଲିକ ଶକ୍ତି ବଦଳରେ ଧର୍ମୀୟ ଅନୁଷ୍ଠାନ ସ୍ୱୀକାର ଶ୍ରୀସ୍ନାଶୀଳତାର ଦ୍ୟୋତନା ଥିଲା ।

୮. ମାନବର ମାନସ ସତ୍ତ୍ୱର ଏହି ବିଘଟନ ଓ ସଂକୋଚନ ପ୍ରକ୍ରିୟା କର୍ମ ବିଭାଗର ବୈଚିତ୍ର୍ୟ ଓ ଜଟିଳତା ମଧ୍ୟରେ ଏବଂ ସଭ୍ୟତାର ଅଗ୍ରଗତି କ୍ରମେ ଶନୈଃ ଶନୈଃ ଆହୁରି ଜଟିଳ ଓ ଆହୁରି ସଂକୀର୍ଣ୍ଣ ହେବାକୁ ଲାଗିଲା । ଏହି ଧାରା ନିରବଚ୍ଛିନ୍ନ ଏବଂ ଏବେ ବି ଅବ୍ୟାହତ ରହିଛି । ତଥାପି ଏହି ପ୍ରକ୍ରିୟା ମଧ୍ୟରେ ମଣିଷ ଓ ତାର ବାସସ୍ଥଳୀ ଆମର ଏକ ସୁନ୍ଦର ବ୍ୟାଖ୍ୟା ପୃଥିବୀର ଏକ ବୁନିଆଦ ରହିଥିଲା । ଟୋଲେମିଂକ ବିଶ୍ୱ ଚିତ୍ରରେ ଆମର ବସୁମାତା, ବିରାହଙ୍କ ଦ୍ୱାରା ସମୁଦ୍ର ଗର୍ଭରୁ ଉତ୍ଥିତ ଧରଣୀ ଏହି ସୌର ମଣ୍ଡଳୀର କେନ୍ଦ୍ର ଥିଲା । ସୂର୍ଯ୍ୟ ତା ସ୍ଥିର ପାଖରେ ପ୍ରଦକ୍ଷିଣ କରୁଥିଲା । କିନ୍ତୁ ସେହି ଗୌରବ ବେଶୀ

ବିନ ରହିଲା ନାହିଁ । କପରନିକସ୍ କହିଲେ ଯେ ପୃଥିବୀ ସୂର୍ଯ୍ୟ ପାଖରେ ସୂର୍ଯ୍ୟ ବୁଲୁ ନାହିଁ । ପୃଥିବୀ ହିଁ ସୂର୍ଯ୍ୟ ଚାରି ପାଖରେ ଏକ ବାଧ୍ୟତା ବଶତଃ ପ୍ରଦକ୍ଷିଣ କରୁଛି । ପୃଥିବୀ ମୁଖ୍ୟ ନୁହେଁ, କେନ୍ଦ୍ର ନୁହେଁ, ବିଶେଷ ସୃଷ୍ଟି ନୁହେଁ । ତଥାପି ଅବଶେଷ ରହିଲା କିଛିଟା ବୃନଆଦ - ମଣିଷ ବିଶ୍ୱର ଶ୍ରେଷ୍ଠ ଓ ସାର୍ଥକ ସୃଷ୍ଟି, ଆଲୋକର ବର୍ତ୍ତିକା, ଶିବ ଓ ସୁନ୍ଦର । ସବୁର ମଧ୍ୟରେ ମଣିଷହିଁ ଶ୍ରେଷ୍ଠ । ତା ପରେ ଡାରଉଇନ୍ ଦେଖେଇ ଦେଲେ ଯେ ମଣିଷ ଏକ ଇଚ୍ଛାକୃତ ସାର୍ଥକ ସୃଷ୍ଟି ନୁହେଁ । ପ୍ରାକୃତିକ ମନୋନୟନ ଓ ଯୋଗ୍ୟତମର ଉଦ୍‌ବର୍ତ୍ତନ ବା ଉଜ୍‌ଜୀବନ ନିୟମର ଅବଶମ୍ଭାବୀ ପ୍ରକାଶ ରୂପେ ଜୀବୀ ନିମ୍ନ ଗଠନରୁ ଉଚ୍ଚ ଗଠନ ଆଡ଼କୁ କ୍ରମବିକାଶ ପଥରେ ଅଗ୍ରଗତି କରିବାର ଏହା ଏକ ପରିଣତି । ତା' ହେଲେ ମଣିଷ ଆଉ ଶ୍ରେଷ୍ଠ ବା ସାର୍ଥକ ସୃଷ୍ଟି ହୋଇ ରହିଲା ନାହିଁ । କିନ୍ତୁ ତଥାପି ତା ଭିତରେ ରହିଲା ସୁନ୍ଦର, ଚିରନ୍ତନ ଭବିଗଳ, ସ୍ନେହ, ପ୍ରେମ, କରୁଣା, ଯୁକ୍ତି ଆଉ ବୌଦ୍ଧିକତା । ସେ ବଣ୍ୟ ନୁହେଁ, ପଶୁ ନୁହେଁ, ତାଠାରୁ ଊର୍ଦ୍ଧ୍ୱରେ । କିନ୍ତୁ ଫ୍ରୟେଡ୍ ଏହି ଦାମ୍ଭିକତା ପୁଣି ଭାଙ୍ଗି ଦେଲେ । ସେ କହିଲେ, ପାଣିରେ ଭାସୁଥିବା ବରଫ ଖଣ୍ଡ ପରି ମାନବର ଏଇ ମନ, ଏକ ଦଶମାଂଶ ଉପରେ, ନବ ଦଶମାଂଶ ତଳେ । ଏଇ ଏକ ଦଶମାଂଶ ହିଁ ଚେତନ, ସାମାଜିକ ଆଉ ସୁନ୍ଦର । ଏହି ସ୍ତର ତଳେ ନବ ଦଶମାଂଶରେ ଅଛି ଅନ୍ଧାର ଗୁଳୁଗୁଳୁ, ସାତ ତାଳ ପାଣି, ସାତତାଳ ପଙ୍କ ଆଉ ଫରୁଆ - ଅଛି ଅବଚେତନ ଆଉ ମଗ୍ନଚେତନ ଓ ଅଚେତନ ମନ - ବଣ୍ୟ ଅଦମ ଓ ପାଶବିକ । ମଣିଷ ମନର ଗରିମା ପୁଣି ଥରେ ଚୂର୍ଣ୍ଣୀଭୂତ ହୋଇଗଲା ।

୯. ଏହା ସାଙ୍ଗକୁ ପରେ ପରେ ଆସିଲା ବହୁ ନୂତନ ଚିନ୍ତା, କ୍ରାନ୍ତିକାରୀ ଚିନ୍ତା । ଆଉ ନୂତନ ଆୟାମ ( dimension ) — ଦ୍ୱନ୍ଦ୍ୱ-ମୂଳକ ବସ୍ତୁବାଦ, ବିଜ୍ଞାନର ଚମତ୍କାରିତା, ଜ୍ଞାନର ବିସ୍ଫୋରଣ, ଶିଳ୍ପ ବିପ୍ଳବ ଓ ସଭ୍ୟତା, ବସ୍ତୁର ରହସ୍ୟମୟ, ପୃଥ୍ବୀ ଓ କାଳର ଅବିଚ୍ଛିନ୍ନତା ଇତ୍ୟାଦି ଇତ୍ୟାଦି । ମାନବ ସମକ୍ଷରେ ଅଷ୍ଟ ଐଶ୍ୱର୍ଯ୍ୟର ଅସୀମ ସମ୍ଭାବନା ଖୋଲିଗଲା ସତ । ଚଉରାଶୀ ନର୍କର ପଥ ବି ଖୋଲିଗଲା । ସେ ଏକାଧାରରେ ହେଲା ଦେବ ଓ ଦାନବ, ରଜାମିଦାସ୍ ଆଉ ଭସ୍ମାସୁର । ସେ ଗୋଲକ ବିହାରୀ ହେଲା ସତ କିନ୍ତୁ ପତିତପାବନ

ହୋଇପାରିଲା ନାହିଁ । ଫଳରେ ଏଇ କ୍ରମ ବିଘଟନ ପ୍ରକ୍ରିୟା, ଏକ ବ୍ୟାପ୍ତ ବିଶ୍ୱ ( Macrocosm )ରୁ ମାନବର ମାନସ ସତ୍ତାକୁ କ୍ରମେ ଏକ କ୍ଷୁଦ୍ରାଦପି ବିଶ୍ୱ ( Microcosm ) ଆଡ଼କୁ ନେଇ ଆସିଲା । ଠିକ୍ ଯେମିତି ସୌରମଣ୍ଡଳର ଚନ୍ଦ୍ର ପରିବର୍ତ୍ତେ ଏକ କେନ୍ଦ୍ରୀୟ ନାଭିକେନ୍ଦ୍ରର ପାଖରେ କେତେକ ନିର୍ଦ୍ଦିଷ୍ଟ କକ୍ଷରେ ଘୂରି ବୁଲୁଥିବା ବିଦ୍ୟୁତ୍‌କଣାର ପ୍ରତିଚ୍ଛବି । ଅବା ଯେମିତି ଦେହ ବା ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ପରିକଳ୍ପନା । ଏହି ବିଘଟିତ ମାନସ ସତ୍ତାରେ Space-time continuum ଅଛି, କିନ୍ତୁ ନାହିଁ ଆଧ୍ୟାତ୍ମିକ ବା ଭାବାଗତ Continuum । ଭାବ ଓ ପ୍ରବଣତା ଅଛି କିନ୍ତୁ ତା ସାଙ୍ଗକୁ ବେଶୀ ଅଛି ଭାବ ଓ ପ୍ରବଣତାର ବିଶ୍ଳେଷଣ । ଜଳ ସ୍ଥାନରେ ଅଛି ଦୁଇ ଗୋଟି ଉଦ୍‌ଜାନ ପରମାଣୁ ଆଉ ଗୋଟିଏ ଅମ୍ଳଜାନ ପରମାଣୁ । ଦୂରବୀକ୍ଷଣ ସାଙ୍ଗରେ ଅଣୁବୀକ୍ଷଣ ଅଛି କିନ୍ତୁ ପାରି ପାର୍ଶ୍ୱିକତା ଓ ଚିନ୍ତା ରାଜ୍ୟରେ ସୀମା ସରହଦ ନାହିଁ । ଅଛି ଏକ ପ୍ରାକ୍ ନୈସ୍ୱାୟୁକ, ପ୍ରାକ୍-ଚେତନ ଶ୍ରେଣୀର ପୋଡ଼ୁବୃକ୍ଷ ଆଉ ଶଗଡ଼ ସଭ୍ୟତା ସାଙ୍ଗେ ବୋଏଇଙ୍ଗ୍, ରକେଟ୍ ଓ ଆକାଶ-ଉପଗ୍ରହ ସଭ୍ୟତାର ସହାବସ୍ଥାନ ।

୧୦. କର୍ମ ବିଭାଗର ପ୍ରବର୍ତ୍ତନ ଫଳରେ ଦୂର ଅତୀତରେ ଜନ ଗୋଷ୍ଠୀର ମାନସ ସତ୍ତାରେ ଯେଉଁ ବହିର୍କରଣ ଓ ବିଘଟନ ପ୍ରକ୍ରିୟା ଆରମ୍ଭ ହୋଇଥିଲା— ଏହା ଯେପରି ସେଇ ପ୍ରକ୍ରିୟା ଓ ଧାରାର ଚୂଡ଼ାନ୍ତ ପରିଣତି । ପାତଞ୍ଜଳିଙ୍କ ଚିତ୍ତବୃତ୍ତି ନିରୋଧ ନୁହେଁ—ସଂପୂର୍ଣ୍ଣ ରୂପେ ଚିତ୍ତବୃତ୍ତି, ଚିତ୍ତ ଆଉ ବୃତ୍ତିର ବିଯୋଜନ । ଆଗେ ଏହା ପଲ୍ଲୀ ଆଉ ପୁର ମଧ୍ୟରେ ପ୍ରାୟ ବାଣ୍ଟି ହୋଇ ଯାଇଥିଲା । କିନ୍ତୁ ଅବିକା ପୁର ସ୍ଥାନରେ ଆସିଲା ଅତିକାୟ ସହର— megalopolis । 'ପୁର' ମଧ୍ୟରେ ଆସିଲା ଶିଳ୍ପ ଭିତ୍ତିକ ସମାଜର ସୃଷ୍ଟି ଶ୍ରମିକ । ତା ସାଙ୍ଗକୁ ଆସିଲେ ଉଦ୍‌ବୃତ୍ତ ଶ୍ରମର ମୁନାଫା ଭୋଗକାରୀ ପରାଙ୍ଗପୁଷ୍ଟ ଗୋଷ୍ଠୀ— ନବଗୁଞ୍ଜର ରୂପରେ । ଆସିଲା ଗଣମାନବ ( Mass man ) ଆଉ ବହୁ ଆୟାମଯୁକ୍ତ ( Multi-dimensional ) ମାନବ । ପୂର୍ବର ଉତ୍ପାଦନ ବିମୁଖୀ ଅବସର ଭିତ୍ତିକ ଓ ଉଦ୍‌ବୃତ୍ତର ଶଞ୍ଚଣା ଉପଭୋଗୀ ସଂସ୍କୃତି ଚେତନା ବଦଳରେ ଆସିଲା ନୂତନ ମୂଲ୍ୟାୟନ—"ଖାଲି ମୂଲ୍ୟ (Price)

ମୂଲ୍ୟାସୂକ ନୁହେଁ''— ଧନ ସମ୍ପର୍କ Cash nexus । ଗୋଟିଏ ପିନ୍ ତିଆରି କରିବାରେ ଯେଉଁ ବିଶଦ ଶ୍ରମ ବିଭାଗ ବ୍ୟବସ୍ଥା ହୋଇଛି, ସେ ସମ୍ବନ୍ଧରେ ଆଦାମସ୍ମିଥଙ୍କ ବିଖ୍ୟାତ ଉଦାହରଣ ଅତିଶୟ ତାତ୍ପର୍ଯ୍ୟପୂର୍ଣ୍ଣ । ଶ୍ରମ ବିଭାଗର ନିଖୁଣତା ଫଳରେ କର୍ମର ବୈଚିତ୍ର୍ୟ ଓ ଆହ୍ଲାଦ ରହିଲା ନାହିଁ । ରହିଲା ନାହିଁ ଜୀବନ ଧାରାର ସଂହତି ଓ ସମନ୍ୱୟ ଉତ୍ପାଦନରେ ଅଂଶ ଗ୍ରହଣ କରୁଥିବା ଲୋକେ ରହିଲେ, ଅଛନ୍ତି, ଥିବେ । କିନ୍ତୁ ଉତ୍ପାଦନ ଭୋଗ କରିବା ଲୋକଙ୍କ ସଂଖ୍ୟା ଓ ପ୍ରକାର ବଢ଼ିଗଲା । ବଢ଼ିଲେ ଭୋଗୀ ଓ ଅଧିକାରୀ । ବଢ଼ିଲା ଭୋଗ ଓ ଅଧିକାରର ସ୍ତର ଭେଦ ଓ ପ୍ରକାର ଭେଦ । ଏହା ପ୍ରତ୍ୟକ୍ଷ ନ ହୋଇ ଅନେକ ସ୍ଥଳରେ ହେଲା ପରୋକ୍ଷ ଓ ରହସ୍ୟମୟ । ଭୋଗ ଓ ଅଧିକାର ପାଇଁ ଆସିଲା ବହୁ ଐନ୍ଦ୍ରଜାଲିକ ଉପାୟ, ଯାହା ଆଦିମ ସମାଜରେ ମୁଖ୍ୟତଃ ଉତ୍ପାଦନ ପାଇଁ ଉଦ୍ଦିଷ୍ଟ ଥିଲା ।

୧୧. ଫଳରେ ସବୁ କିଛିର ଚେହେରା ବଦଳିଗଲା । ଆଗେ ଈଶ୍ୱର ସମସ୍ତଙ୍କର ମଙ୍ଗଳ କରୁଥିଲେ । କିନ୍ତୁ କ୍ରମେ ସେ ବହୁ ଲୋକଙ୍କର ହିତ କଲେ । Greatest good of the greatest number ତାପରେ ଆମକୁ ଜଣାଗଲା, ସେ ଅନାଗ୍ରହୀ ଓ ଉଦାସ ଅଥବା ସେ ଶୋଇପଡ଼ିଛନ୍ତି । ହୁଏତ କ୍ଷୀର ସମୁଦ୍ରରେ ନିଜ ସହ-ଧର୍ମିଣୀଙ୍କ ପାଦସେବା ଆଉ ପାର୍ଶ୍ୱଚରଙ୍କ ସଂଗୀତ ସେବାରେ ଅଭିଭୂତ ହୋଇ ସେ ଅନନ୍ତ ଶୟନ ଯାଇଛନ୍ତି । ପୁଣି ଜଣାଗଲା ଯେ ନା! —ସେ ଶୋଇ ନାହାନ୍ତି । ସେ ହୁଏତ ମରି ଯାଇଛନ୍ତି । କିଛିକାଳପରେ ତା ବି ବଦଳି ଗଲା —ନା ସେ ମରିନାହାନ୍ତି । ସେ ବିଲକୁଲ୍ ନାହାନ୍ତି । କେବେ ନଥିଲେ । ଏହାପରେ ବହୁବିଧ ଚିନ୍ତା, ପରୀକ୍ଷା, ବିଳାପ, ଆର୍ତ୍ତନାଦ ଉପହାସ ଅବଜ୍ଞା ଆଉ ମନନ ।

୧୨. ତାହେଲେ ରହିଲା କଣ ! । ଆଗେ ଐନ୍ଦ୍ରଜାଲିକ ଶକ୍ତିଦ୍ୱାରା ଅର୍ଥାତ ଆଲୌକିକ ଉପାୟରେ ଅଦୃଶ୍ୟ ଶକ୍ତିକୁ ମାନବ ପ୍ରଭାବିତ କରିବାକୁ ଚେଷ୍ଟା କରୁଥିଲା । ପରେ ସ୍ୱାଭାବିକ ଉପାୟରେ ଏହି ଅଦୃଶ୍ୟ ବା ଦୈବଶକ୍ତିକୁ ପ୍ରଭାବିତ କରିବାକୁ ଚେଷ୍ଟା କଲା ।

ତାର ନାମ 'ଧର୍ମ' । କିନ୍ତୁ ଏଇ ଧର୍ମର ଚେହେରା ବି ବଦଳିଗଲା । ଧର୍ମ କଅଣ? ଧ୍ରିୟତେ ଧର୍ମ ଇତ୍ୟାହୁଃ ସ ଏବ ପରମ ପ୍ରଭୁଃ । ଆଗରୁ ଧର୍ମ ଧାର୍ମିକକୁ ଧରିଥିଲା । ଧାର୍ମିକ ଧର୍ମକୁ ଧରିଥିଲା । ଲୋକସମୟ ଧର୍ମଦ୍ୱାରା ଧୃତ ରକ୍ଷିତ ଓ ପରିଚାଳିତ ଥିଲା—ଏହିପରି ଅନେକ କଥା । କିନ୍ତୁ ଏବେ ତାହା ଦୁଇଗୋଟି ଉଦ୍‌ଯାନ ପରମାଣୁ ସହ ଗୋଟିଏ ଅମ୍ଳଜାନ ପରମାଣୁର ସମିଶ୍ରଣରେ ଜଳସୃଷ୍ଟି କରିବାର ପ୍ରକ୍ରିୟା ହୋଇଗଲା । ଅଲୌକିକ ଓ ଦୈବଶକ୍ତିକୁ ପ୍ରଭାବିତ କରିବାର ଚେଷ୍ଟା ଆଉ ରହିଲା ନାହିଁ—ବିଜ୍ଞାନ ଠାରୁ ସେ ସମ୍ବନ୍ଧରେ ଶେଷ ଉତ୍ତର ମିଳିଲା । ତେଣୁ ଏବେ ଆଧୁନିକ ଜୀବନ ଯାତ୍ରାରେ ଏହି ଦୁଇଟି ସମ୍ଭାବନା ( ଇନ୍ଦ୍ରଜାଲ ଓ ଧର୍ମ ) ନଷ୍ଟ ହୋଇଗଲା । କିନ୍ତୁ ତା ସଙ୍ଗେ ନୂତନ ସମ୍ଭାବନାର ଉତ୍ପ୍ରେରକ (Catalyst) ଆସିଲା ନାହିଁ । ଅବା ଯେଉଁ ସମ୍ଭାବନା ଆସିଲା ଜୀବନଯାତ୍ରା ଓ ମାନସ ସତ୍ତ୍ୱରେ ତାର ଆତ୍ମିକତା ହେଲା ନାହିଁ । ସମ୍ଭାବନା ଥିଲା, ସ୍ୱାଭାବିକ ଉପାୟରେ ସାମାଜିକ ପାରିପାର୍ଶ୍ୱିକ ଶକ୍ତି ବା ପ୍ରକ୍ରିୟାକୁ ପ୍ରଭାବିତ କରିବାର । କିନ୍ତୁ ମାନବର ଖଣ୍ଡିତ ମାନସ ତତ୍ତ୍ୱ, ଯୌଗିକ ସାମାଜିକ ବ୍ୟବସ୍ଥା, ଭୋଗ ଓ ଅଧିକାରର ଉତ୍କଟ ବୈଷମ୍ୟ ସାଂଗକୁ ଅସୀମ ଆଶା ଓ ଆକାଂକ୍ଷାର ଦମ୍ଭମୟ ପରିଣତି ଏହି ସମ୍ଭାବନାକୁ ବିଡ଼ମ୍ବନାରେ ପରିଣତ କରିଦେଲା । ଅପର ପକ୍ଷରେ ଅଲୌକିକ ଉପାୟରେ ଏହି ସାମାଜିକ ଓ ପାରିପାର୍ଶ୍ୱିକ ଶକ୍ତିକୁ ପ୍ରଭାବିତ କରିବାର ଉଦ୍ୟମ ଥିଲା ନାହିଁ ବା ସଫଳ ହେଲା ନାହିଁ । ଫଳରେ ବୌଦ୍ଧିକତା ଦୁର୍ବୋଧ୍ୟତା, ଅସଙ୍ଗତତା, ବିଚ୍ଛିନ୍ନତା ( alienation ) ଫଳରେ ବୈରାଗ୍ୟ, ଅବସାଦ, ଉଦ୍ଭ୍ରାନ୍ତତା, ନିର୍ଲିପ୍ତତା । ଫଳରେ ଶୂନ୍ୟ ଗର୍ଭତା, ଅନ୍ତଃସାର ଶୂନ୍ୟତା ମୃତ୍ୟୁଞ୍ଜୟବାଦ, ଆଉ ଶେଷକୁ ଯନ୍ତ୍ରଣା ।

୧୩ . ମାନବ ଜୀବନଯାତ୍ରାର ବା ମାନସ ସତ୍ତ୍ୱର ଏହି ଅବସ୍ଥା ଖାଲି ଏକ ପ୍ରତୀକ୍ଷା, ଅନ୍ୱେଷଣ ବା ଜିଜ୍ଞାସା ନୁହେଁ । ପୂର୍ବ-ସୂରୀମାନଙ୍କ ପଦାଙ୍କ ଦିଶୁନାହିଁ । ପ୍ରତିରୂପ ବିଶ୍ୱାସ ମିଳିନାହିଁ । ସ୍ୱୀକୃତ ଅନୁକୃତ ସାମାନ୍ୟ କଥନ ବା ବିଶେଷ କଥନ କିଛିନାହିଁ । ମୂଲ୍ୟାୟନ ଥିଲା, ଏବେ ଆଉ ତାର ମୂଲ୍ୟ ନାହିଁ । ଆଜିର ଆଧୁନିକ ମାନବ ସମଗ୍ର

ଜନଗୋଷ୍ଠୀର ଏକ ନୂତନ "ସ୍ତର" ମାନବ ମାନସ ସତ୍ତାର ଏକ ନୂତନ ଅବସ୍ଥାର ପ୍ରତିନିଧି । ତେଣୁ ତାର ଲୋଡ଼ା ନୂତନ ପୁରାବୃତ୍ତ (Myth) ଆଉ କିମ୍ବଦନ୍ତୀ (legend), ନୂତନ ପ୍ରତୀକବାଦ ପ୍ରତିକଳ୍ପ ବାଦ, ନୂତନ ପରମ୍ପରା, ନୂତନ ସରଣୀ ଆଉ ଧାରା । ତେଣୁ ସେ ଖୋଜୁଛି ନୂଆ ପକ୍ଷୀରାଜ ଘୋଡ଼ା ଆଉ ନୂଆ ମନପବନ ଡଙ୍ଗା । ନିଜକୁ ଖୋଜୁଛି ପୁଣି ନୂତନ ଭାବେ ଆବିଷ୍କାର ଅବା ଉଦ୍ଭାବନ କରିବାପାଇଁ । ଖୋଜୁଛି ତାର ଆତ୍ମିକ, ଆଙ୍ଗୀକ, ଉନ୍ମେଷ, ଉତ୍ତରଣ ଆଉ ଭବିଷ୍ୟତ । ସେ ଖୋଜୁଛି ତାର ପୁରାତନ ପରମ୍ପରା, ଧର୍ମ, ଦର୍ଶନ, ବିଜ୍ଞାନ ସାଙ୍ଗରେ ପଡ଼ୋଶୀ, ବିଦେଶୀ ସମଗ୍ର ବିଶ୍ୱକୁ; ସମଗ୍ର ବିଶ୍ୱ ମାନବ ସତ୍ତାକୁ ।

୧୪. ଏହି ପରିପ୍ରେକ୍ଷୀରେ ଏଠାରେ ଦୁଇଦିନବ୍ୟାପୀ ଅନୁଷ୍ଠିତ ହେଉଥିବା ଆଲୋଚନାଚକ୍ରରେ ଆଧୁନିକ କାବ୍ୟ ସାହିତ୍ୟର ଉନ୍ମେଷ ଓ ଉତ୍ତରଣ, ଆତ୍ମିକ, ଆଙ୍ଗୀକ, ତାର ଅବୋଧତା ଓ ଅସଂଲଗ୍ନତା ଏବଂ ପରିଶେଷରେ ତାର ଭବିଷ୍ୟତ ସମ୍ପର୍କୀୟ ଆଲୋଚନା ଏ କ୍ଷେତ୍ରରେ ଯେ ଏକ ନୂତନ ଦିଗ ଉନ୍ମୋଚନ କରିବ ସେଥିରେ ସନ୍ଦେହର ଅବକାଶ ନାହିଁ । ଏହା ସାଙ୍ଗକୁ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପଡ଼ୋଶୀ ଓ ବିଦେଶୀ ସାହିତ୍ୟର ପ୍ରଭାବ କିପରିଭାବରେ ପ୍ରତିଫଳିତ ହୋଇଛି, ଆମର ପ୍ରାଚୀନ ପରମ୍ପରା ଏବଂ ଧର୍ମ, ଦର୍ଶନ ଓ ବିଜ୍ଞାନ ଆଧୁନିକ କାବ୍ୟ ସାହିତ୍ୟକୁ କିପରିଭାବେ ପ୍ରଭାବିତ କରିଛି ସେ ସମ୍ପର୍କୀୟ ଆଲୋଚନା ଯେ ଏକ ନୂତନ ଦିଗ୍‌ବଳୟର ସନ୍ଧାନ ଦେବ ତାହା ନିସନ୍ଦେହରେ କୁହାଯାଇପାରେ ।

ତା ୭ । ୪ । ୧୯୮୧
ବାରିପଦା

**ରାଇଚରଣ ଦାସ**
ସମ୍ପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ଆଧୁନିକ ଓଡ଼ିଆ କବିତାର ଉନ୍ମେଷ ଓ ଉତ୍ତରଣ

ଗତ ଶହେ ବର୍ଷର ଓଡ଼ିଆ କବିତାର ଇତିହାସକୁ ସମାଲୋଚକ ମାନେ ଆଧୁନିକ ଓ ଅତ୍ୟାଧୁନିକ ଏପରି ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରିଥାନ୍ତି । ସ୍ୱାଧୀନତା ପୂର୍ବବର୍ତ୍ତୀ କବିତାକୁ ସେମାନେ ଆଧୁନିକ ଓ ପରବର୍ତ୍ତୀ କବିତାକୁ ଅତ୍ୟାଧୁନିକ ଆଖ୍ୟା ଦେଇଥାନ୍ତି । ଐତିହାସିକ ଆଲୋଚନା ଦୃଷ୍ଟିରୁ ଏ ପ୍ରକାର ପର୍ଯ୍ୟାୟୀକରଣ ନିଶ୍ଚୟ ସୁବିଧାଜନକ । କିନ୍ତୁ ଏ ଦୁଇ ପର୍ଯ୍ୟାୟର ସମ୍ପର୍କ ଓ ସଂହତି ସମ୍ବନ୍ଧରେ ବିସ୍ତୃତ ଆଲୋଚନାର ଆବଶ୍ୟକତା ରହିଛି । କାରଣ ଅନ୍ୟ କେତେକ ସମାଲୋଚକ ସ୍ୱାଧୀନତା ଅବଧି ଲେଖା ହୋଇଥିବା କବିତାକୁ ରୋମାଣ୍ଟିକ୍ କହିଥାନ୍ତି ଓ କେବଳ ପରବର୍ତ୍ତୀ କବିତାକୁ ଆଧୁନିକ ଆଖ୍ୟା ଦେଇଥାନ୍ତି । ଏହି ଦୃଷ୍ଟିରୁ ଆଧୁନିକତା ପ୍ରକୃତରେ କ'ଣ ସେ ସମ୍ପର୍କରେ ସ୍ପଷ୍ଟ ଧାରଣା କରିବା କଷ୍ଟକର ହୋଇ ପଡ଼େ । କହିବା ବାହୁଲ୍ୟ ଯେ ଆଧୁନିକତାର ସଂଜ୍ଞା ଓ ସ୍ୱରୂପ ସ୍ଥିର ନ କଲେ ଓଡ଼ିଆ କବିତାରେ ଆଧୁନିକ ଯୁଗର ସୂତ୍ରପାତ କେବେ ହେଲା ସହଜରେ ନିରୂପଣ କରିହେବ ନାହିଁ ।

ଅନ୍ୟାନ୍ୟ ଭାରତୀୟ ଭାଷାର କବିତା ତଥା ଓଡ଼ିଆ କବିତାରେ ଆଧୁନିକତା ମୂଳତଃ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରେ ସମ୍ଭବ ହୋଇଛି । ଏଥିରେ କାହାରି ଦ୍ୱିମତ ନାହିଁ । ଇଂରାଜୀ 'modern' ଶବ୍ଦ ଓଡ଼ିଆରେ 'ଆଧୁନିକ' ଶବ୍ଦକୁ ରୂପାନ୍ତରିତ ହୋଇଛି । କିନ୍ତୁ ଓଡ଼ିଆରେ ଯାହାକୁ 'ଅତ୍ୟାଧୁନିକ' କୁହାଯାଉଛି ତାହା ଇଂରାଜୀ 'Post modern' ଶବ୍ଦର ଅର୍ଥ ଠିକ୍ ବୁଝାଏ ନାହିଁ । ଏ କ୍ଷେତ୍ରରେ 'ଅତ୍ୟାଧୁନିକ' ଏକ ପ୍ରକାର ତୀବ୍ର ଆଧୁନିକତାର ସୂଚନା ଦେଇଥାଏ । ଅନ୍ୟ ପକ୍ଷରେ ଇଂରାଜୀ 'Post modern' ଶବ୍ଦ ଏକ ସମ୍ପୂର୍ଣ୍ଣ ଭିନ୍ନ ଚେତନାର ଦ୍ୟୋତକ ।

ପାଶ୍ଚାତ୍ୟ ସାହିତ୍ୟ ସମାଲୋଚକ ମାନେ ବିଂଶ ଶତାବ୍ଦୀର ତୃତୀୟ ଦଶକ ବେଳକୁ ଆଧୁନିକ ଯୁଗର ଅବସାନ ଘଟି Post modern ଯୁଗର ଆରମ୍ଭ ହୋଇ ସାରିଛି ବୋଲି କହିଥାନ୍ତି । ଏହି ପରିପ୍ରେକ୍ଷୀରେ ଦେଖିଲେ ଓଡ଼ିଆ କବିତାରେ ଆଧୁନିକତା ରୂପକ ସମସ୍ୟାଟି ଅଦ୍ଭୁତ ଜଟିଳ ମନେ ହେବ । କାରଣ ବିଂଶ ଶତାବ୍ଦୀର ପ୍ରଥମ ଦୁଇ ତିନି ଦଶକରେ ଯେଉଁ modernism ବା ଆଧୁନିକତାର ରୂପ ସ୍ପଷ୍ଟ ହୋଇ ଉଠିଥିଲା ତାହା ପଞ୍ଚମ ଦଶକରେ ଓଡ଼ିଆ କବିତାରେ 'ଅତ୍ୟାଧୁନିକ' ବୋଲାଇଲା । ଏବଂ ଓଡ଼ିଆ କବିତାରେ Post modernism ବା ଆଧୁନିକୋତ୍ତର ଚେତନାର ସଂକେତ ମିଳିଲାଣିକି ନାହିଁ ସେ ସମ୍ପର୍କରେ ଏଯାଏଁ କୌଣସି ଆଲୋଚନା ହୋଇନାହିଁ ।

ଏ ସନ୍ଦର୍ଭର ବିଷୟ ବସ୍ତୁ ଐତିହାସିକ, କିନ୍ତୁ ଏଠାରେ ଆଧୁନିକ ଓଡ଼ିଆ କବିତାର ଉତ୍ତରଣର ଏକ ଧାରାବାହିକ ବିବରଣୀ ଦେବା ଏହି ଲେଖକର ଉଦ୍ଦେଶ୍ୟ ନୁହେଁ । ବରଂ ଆଧୁନିକତାର କେଉଁ କେଉଁ ରୂପ ଓ ବିଭାବ ବିଭିନ୍ନ ସମୟରେ ଓଡ଼ିଆ କବିତାରେ ପ୍ରକାଶିତ ହୋଇଛି ତାହାର ସମ୍ୟକ୍ ପରିଚୟ ଦେବାକୁ ଏଠାରେ ଚେଷ୍ଟା କରା-ଯାଇଛି । ଗତ ଶହେ ବର୍ଷର ଓଡ଼ିଆ କବିତାକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି ଏବଂ ଏହି ତିନି ପର୍ଯ୍ୟାୟର ମୁଖ୍ୟ ପୁରୋଧା ମାନଙ୍କର ନାମ ହିଁ ଉଲ୍ଲେଖ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ଆରମ୍ଭ ହୋଇଥିବା ଆଧୁନିକତା ଦ୍ୱିତୀୟ ପର୍ଯ୍ୟାୟରେ ପରିଣତ ରୂପ ନେଲା । ତୃତୀୟ ପର୍ଯ୍ୟାୟରେ ଏହି ପରମ୍ପରାକୁ ଭାଙ୍ଗି ଏକ ନୂଆ ଧରଣର କବିତା ସୃଷ୍ଟି ହୋଇଥିବାର ଯଥେଷ୍ଟ ସୂଚନା ମିଳୁଛି । ଏହା ହିଁ ଏ ସନ୍ଦର୍ଭରେ ଉପ-ସ୍ଥାପନା କରାଯାଉଛି ।

ରାଧାନାଥ ଓ ଫକୀରମୋହନଙ୍କ କାବ୍ୟ କବିତାରେ ପ୍ରଥମେ ଆଧୁନିକତାର ସୂତ୍ରପାତ ହୋଇଥିଲା । ସେହି ସମୟରୁ ହିଁ ଓଡ଼ିଆ ସାହିତ୍ୟକୁ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ପଡିବା ଆରମ୍ଭ ହୋଇଥିଲା । ବୌଦ୍ଧିକ ସ୍ୱାଧୀନତା ଆଧୁନିକତାର ଗୋଟିଏ ମୌଳିକ ବିଭାବ ଏବଂ ଏହାର ପ୍ରଥମ ଉଦ୍‌ଘୋଷକ ଥିଲେ ରାଧାନାଥ । ସେ ଓଡ଼ିଆ କବିତାକୁ

ଗୀତଯୁଗୀୟ ପରମ୍ପରାର ନିଗଡ଼ରୁ ମୁକ୍ତ କରିଥିଲେ, ସେ ଅବଶ୍ୟ ଗୀତ ଯୁଗୀୟ ଅଳଙ୍କାର ପ୍ରୟୋଗର ବର୍ଜନ କରି ପାରିନଥିଲେ, କିନ୍ତୁ ଚିନ୍ତାଧାରାରେ ପ୍ରକାଶ ଭଙ୍ଗୀରେ ସେ ଅସାଧାରଣ ସ୍ୱାତନ୍ତ୍ର୍ୟ ଜାହିର୍ କରିଥିଲେ । ଫକୀର ମୋହନଙ୍କ କବିତାର ବିଷୟ ବସ୍ତୁ ଥିଲା ସାଧାରଣ ଦୈନନ୍ଦିନ ଜୀବନର ଘଟଣାବଳୀ, ତାଙ୍କର ଭାଷା ଥିଲା ସାଧାରଣ କଥିତ ଭାଷା । ଏହି ଦୁଇ ଜଣ କବି ପ୍ରଥମ କରି ଓଡ଼ିଆ ଭାଷାର ନିଜସ୍ୱ ସ୍ୱତନ୍ତ୍ର ସ୍ୱରୂପ ଉଦ୍‌ଘାଟନ କରିବାକୁ ଚେଷ୍ଟା କରିଥିଲେ । ପରବର୍ତ୍ତୀ କାଳରେ ସାରଳା ଦାସ ଓ ଜଗନ୍ନାଥ ଦାସଙ୍କ ଭାଷାର ସୌନ୍ଦର୍ଯ୍ୟ ଓ କ୍ରିୟାଶୀଳତା ପ୍ରତି ଓଡ଼ିଆ ପାଠକର ଦୃଷ୍ଟି ଆକୃଷ୍ଟ ହେଲା । କିନ୍ତୁ ରାଧାନାଥ ଓ ଫକୀର ମୋହନଙ୍କି ପ୍ରଥମେ ଓଡ଼ିଆ ଭାଷାର ଶକ୍ତି ଓ ସମ୍ଭାବନା ସହିତ ଓଡ଼ିଆ ଜାତିକୁ ପରିଚିତ କରାଇ ଦେଇଥିଲେ; ଏବଂ ଏହି ଭାଷାକୁ ଏକ ମୁକ୍ତ ଚେତନାର ସମର୍ଥ ବାହକ ଭାବରେ ଉପସ୍ଥାପିତ କରିଥିଲେ ।

ଅନୁଭୂତି ପ୍ରତି ଏକ ଜଟିଳ ମାନସିକ ପ୍ରତିକ୍ରିୟା ପ୍ରକାଶ କରିବା ଆଧୁନିକ କବିର ଅନ୍ୟତମ ମୌଳିକ ଧର୍ମ । ରାଧାନାଥଙ୍କ ପ୍ରକାଶ ଭଙ୍ଗୀ ଜଟିଳ ନୁହେଁ; ସେ ବର୍ଣ୍ଣନାତ୍ମକ ଶୈଳୀ ହିଁ ବ୍ୟବହାର କରିଛନ୍ତି । କିନ୍ତୁ ତାଙ୍କର କାବ୍ୟ-ବ୍ୟକ୍ତିତ୍ୱ ଥିଲା ବୈଚିତ୍ର୍ୟମୟ, ପରସ୍ପର ବିରୋଧି ଗୁଣରେ ଭୂଷିତ । ଗୋଟିଏ ସ୍ତରରେ ସେ ଥିଲେ ଜାତୀୟତାବାଦୀ, ପ୍ରକୃତିପ୍ରେମୀ, ଜାଗତିକ ନାନାବିଧ ରୂପର ସୌନ୍ଦର୍ଯ୍ୟରେ ମୁଗ୍ଧ । ଅନ୍ୟ ଏକ ସ୍ତରରେ ସେ ବାହ୍ୟ ସୌନ୍ଦର୍ଯ୍ୟର କ୍ଷଣସ୍ଥାୟିତ୍ୱ ବିଷୟରେ ଗଭୀର ଭାବରେ ସଚେତନ ଥିଲେ । ତାଙ୍କର କାବ୍ୟ କବିତାରେ ଧ୍ୱଂସ, କ୍ଷୟ ଓ ମୃତ୍ୟୁର ଚିତ୍ର ବହୁଳ ଭାବରେ ଦେଖିବାକୁ ମିଳେ । ଏହା ସହିତ ଆତ୍ମ-ସମୀକ୍ଷା କରିବା ଥିଲା ତାଙ୍କ କାବ୍ୟିକ ପ୍ରବୃତ୍ତିର ଏକ ମୁଖ୍ୟ ସ୍ୱଭାବ । ନୈତିକ ଓ ଆଧ୍ୟାତ୍ମିକ ବିପର୍ଯ୍ୟୟ ସମ୍ପର୍କରେ ତାଙ୍କର ସଚେତନତା ତାଙ୍କ କାବ୍ୟିକ ଦିବ୍ୟ ଦୃଷ୍ଟିକୁ ନିୟନ୍ତ୍ରିତ କରିଥିଲା । ଏହାକୁ ରୂପ ଦେବାକୁ ଯାଇ ସେ ପାଶ୍ଚାତ୍ୟ ସାହିତ୍ୟରୁ କାହାଣୀ ମାନ ଆଣି ସେଗୁଡ଼ିକୁ ଓଡ଼ିଆ ମାଟି ପବନର ସ୍ପର୍ଶ ଦେଇଥିଲେ । ଏ ସମସ୍ତ କାହାଣୀ ବ୍ୟବହାର କରିଥିବାରୁ ସେ କଟୁ ସମାଲୋଚନାର ଶରବ୍ୟ ହୋଇଛନ୍ତି । କିନ୍ତୁ ତାଙ୍କର କାବ୍ୟିକ ଦିବ୍ୟ ଦୃଷ୍ଟିର ସ୍ୱଭାବ ଥିଲା mythic ବା ପୁରାଣ ସୁଲଭ । ତେଣୁ ଏକଥା ଭୁଲିଯିବା ଉଚିତ ନୁହେ ଯେ ତଥା କଥିତ ଅତ୍ୟା-

ଧୁନିକ କବି ଯେଉଁ କାରଣରୁ ବିଭିନ୍ନ ସଭ୍ୟତାର ପୁରାଣ ଓ ଉପକଥା ଇତ୍ୟାଦି ବ୍ୟବହାର କରିଛି, ରାଧାନାଥ ଠିକ୍ ସେହି କାରଣରୁ ସେ ସମସ୍ତ ପାଶ୍ଚାତ୍ୟ କାହାଣୀକୁ ନିଜ କବିତାରେ ନିୟୋଜିତ କରିଥିଲେ ।

ରାଧାନାଥଙ୍କ ସମସାମୟିକ ଓ ପରବର୍ତ୍ତୀ କବି ମାନଙ୍କର କବିତାରେ ଏ ପ୍ରକାର ଜଟିଳତାର ପ୍ରମାଣ ଖୁବ୍ କ୍ୱଚିତ ଦେଖିବାକୁ ମିଳେ । ସବୁଜ ଯୁଗ, ସତ୍ୟବାଦୀ ଯୁଗ, ଏପରିକି ତଥା କଥିତ 'ପ୍ରଗତି-ବାଦୀ' ସମ୍ପ୍ରଦାୟର କବିମାନଙ୍କ ମଧ୍ୟରେ ରାଧାନାଥଙ୍କ ଭଳି ବ୍ୟକ୍ତିତ୍ୱ-ସମ୍ପନ୍ନ କବି ଆବିର୍ଭୂତ ହୋଇନଥିଲେ । ଅବଶ୍ୟ ଏମାନଙ୍କ କବିତାରେ ଯେ କୌଣସି ପ୍ରକାର ପରୀକ୍ଷା ନିରୀକ୍ଷା ହୋଇନାହିଁ, ବା ଆଧୁନିକ ଓଡ଼ିଆ କବିତାର ଉତ୍ତରଣ ପ୍ରତି ଏମାନଙ୍କର କୌଣସି ଅବଦାନ ନାହିଁ, ଏକଥା କହିବା ସତ୍ୟର ଅପଳାପ ହେବ । ବରଂ ସବୁଜ ଯୁଗର କାଳନ୍ଦୀଚରଣ ଓ ବୈକୁଣ୍ଠନାଥ, ସତ୍ୟବାଦୀ ଯୁଗର ନୀଳକଣ୍ଠ, ଏବଂ ଗୋଦାବରୀଶ ମହାପାତ୍ର ଆଦି କବି ମାନେ ରାଧାନାଥ-ପ୍ରତିଷ୍ଠିତ କାବ୍ୟ-ପରମ୍ପରାକୁ ବହୁ ଭାବରେ ପୁଷ୍ଟ ଓ ମାର୍ଜିତ କରିଛନ୍ତି ।

ଆଧୁନିକ କବିତାର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ କଲେ ସଚ୍ଚି ରାଉତରାୟ, ରାଧାନାଥଙ୍କ ପରେ ସେ ହିଁ ଅଗ୍ରଗଣ୍ୟ ଓଡ଼ିଆ କବି । ତାଙ୍କର କାବ୍ୟ ମାନସ ରାଧାନାଥଙ୍କ କାବ୍ୟ-ମାନସ ଅପେକ୍ଷା ଅଧିକ । ଜଟିଳ । ବସ୍ତୁତଃ ରାଉତରାୟଙ୍କ କାବ୍ୟ ଚେତନାର ଉତ୍ତରଣରେ ଆଧୁନିକ ଓଡ଼ିଆ କବିତାର ସମଗ୍ର ବିବର୍ତ୍ତନ ପ୍ରତିଫଳିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡିଆ କବିତା କ୍ଷେତ୍ରରେ ଏପରି କୌଣସି ପରୀକ୍ଷା ହୋଇ ନାହିଁ ଯାହା ସେ ନିକରିଛନ୍ତି । ତାଙ୍କର ଶକ୍ତି ବହୁବିଧ : ସେ ସ୍ୱପ୍ନାବିଷ୍ଟ ହୋଇପାରନ୍ତି, ବିଦ୍ରୂପ କରିପାରନ୍ତି, ବିଦ୍ରୋହ କରିପାରନ୍ତି ଏବଂ ଆତ୍ମ ସତ୍ତାରେ ଗଭୀର ଭାବରେ ନିମଜ୍ଜିତ ରହିପାରନ୍ତି । ରାଧାନାଥୀୟ କାବ୍ୟ-ପରମ୍ପରାରୁ ଉଦ୍ଭବ ହୋଇ ତାଙ୍କର ଚେତନା ସେ ପରମ୍ପରାକୁ କେବଳ ଯେ ଏକ ପରିଣତ ରୂପ ଦେଇଛି ତାହା ନୁହେ, ତାହାକୁ ଅତିକ୍ରମ କରିଯିବାର ଚେଷ୍ଟା କରିଛି । ୧୯୪୭ ରେ ପ୍ରକାଶିତ ତାଙ୍କର "ପାଣ୍ଡୁଲିପି" ଓଡ଼ିଆ କବିତା କ୍ଷେତ୍ରରେ ଏକ ଗୁରୁତ୍ୱ-

ପୂର୍ଣ୍ଣ କୃତି । "ପାଣ୍ଡୁଲିପି"ର ଅଧିକାଂଶ କବିତା ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟିରୁ ରୋମାଣ୍ଟିକ୍ । କିନ୍ତୁ ସେହି ପୁସ୍ତକରୁ ହିଁ ଓଡ଼ିଆ କବିତାରେ ଏକ ନୂତନ ପଦ୍ଧତିର ସୂତ୍ରପାତ ହେଲା । ଏହି ପଦ୍ଧତିକୁ ଶକ୍ତି ଯୋଗାଇଲା ରାଉତରାୟଙ୍କ ସଂଯତ, ବୁଦ୍ଧିଦୀପ୍ତ ଦୃଷ୍ଟିଭଙ୍ଗୀ । ରାଉତରାୟ ତାଙ୍କ ଚେତନାର ସମସ୍ତ ଦ୍ୱାର ଉନ୍ମୁକ୍ତ ରଖିଲେ ଏବଂ ସମଗ୍ର ପୃଥିବୀର କାବ୍ୟାନୁଭୂତିର ପରିପ୍ରେକ୍ଷୀରେ ତାଙ୍କ ପାରିପାର୍ଶ୍ୱିକ ଜୀବନର ଅନୁଭୂତିର ସମୀକରଣ କଲେ । ପରୀକ୍ଷାମୂଳକ କବିତା ଭାବରେ ତାଙ୍କର "ଭାନୁମତିର ଦେଶ", "ସ୍ୱାଗତ' ଓ 'କବିତା ୧୯୬୨' ଅନବଦ୍ୟ କୃତିତ୍ୱର ଅଧିକାରୀ । ଦୁଇ ବିଶ୍ୱଯୁଦ୍ଧ ପରବର୍ତ୍ତୀ ମଣିଷର ଭୟ, ଆକୁଳତା, କାରୁଣ୍ୟ ଓ ବୀଭତ୍ସତାକୁ ରାଉତରାୟ ବହୁ ବିଚିତ୍ର ଭଙ୍ଗୀରେ ଚିତ୍ରଣ କରିଛନ୍ତି ।

ସେହିପରି ଗୁରୁପ୍ରସାଦ ମହାନ୍ତିଙ୍କ କବିତାରେ ମଧ୍ୟ ଆଧୁନିକ ପୃଥିବୀର ସାଂସ୍କୃତିକ ସଂକଟର ରୂପ ପ୍ରକାଶିତ ହେଲା । ଗୁରୁପ୍ରସାଦଙ୍କର "ନୂତନ କବିତା" ( ୧୯୫୫ ) ରେ ଯେଉଁ ବୁଦ୍ଧିଦୀପ୍ତ ଦୃଷ୍ଟିଭଙ୍ଗୀର ସୂଚନା ମିଳିଲା ତା' ସହିତ ରାଉତରାୟଙ୍କ ଦୃଷ୍ଟିଭଙ୍ଗୀ ତୁଳନୀୟ । ଏହି ଦୁଇ ଦୃଷ୍ଟିଭଙ୍ଗୀର ମୌଳିକ ପ୍ରବୃତ୍ତିରେ କୌଣସି ପାର୍ଥକ୍ୟ ନାହିଁ, ଉଭୟେ ବ୍ୟଞ୍ଜନାତ୍ମକ ( ironical ) । କିନ୍ତୁ ଗୁରୁପ୍ରସାଦଙ୍କ କ୍ଷେତ୍ରରେ ତାହା କିଛିଟା ତୀବ୍ର । ଏହାର କାରଣ ବୋଧହୁଏ ଏୟା ଯେ ଗୁରୁପ୍ରସାଦ ତାଙ୍କର ପ୍ରାୟ ସମସ୍ତ କବିତାରେ ଏଲିଅଟ୍‌ଙ୍କ ଚେତନାକୁ ପ୍ରକାଶ କରିବା ପାଇଁ ବିଧିବଦ୍ଧ ଭାବରେ ଚେଷ୍ଟା କଲେ । ଏ ପ୍ରକାର ଚେଷ୍ଟା କରିବା ଫଳରେ ତାଙ୍କ କାବ୍ୟ ଜଗତରେ ପରିସର ସଙ୍କୁଚିତ ଓ ସଂକୀର୍ଣ୍ଣ ହୋଇ ପଡ଼ିଲା । ଯଦି ରାଉତରାୟଙ୍କ ଚେତନାର ବ୍ୟାପକତା ଓ ବହୁବିଧତା ଗୁରୁପ୍ରସାଦଙ୍କ କବିତାରେ ନାହିଁ ; ଏହା ତାଙ୍କର ସୀମିତ ଚିତ୍ରକଳ୍ପ ବ୍ୟବହାରରୁ ସ୍ପଷ୍ଟ ଜଣା ପଡ଼େ । ଗୁରୁପ୍ରସାଦ ଏଲିଅଟ୍‌ଙ୍କ ପ୍ରଭାବକୁ ଅତିକ୍ରମ କରି ପାରିଲେ ନାହିଁ । ତାଙ୍କ 'କାଳ ପୁରୁଷ'ର ସମସ୍ତ ଚମତ୍କାରିତା ସତ୍ତ୍ୱେ ତାହା ଯେ ଏଲିଅଟ୍‌ଙ୍କ The wasteland କୁ ଛନ୍ଦେ ଛନ୍ଦେ ଅନୁସରଣ କରିଛି, ଏହି ସତ୍ୟଟିକୁ ପାଠକ ସହଜରେ ଭୁଲିଯାଇ ପାରେ ନାହିଁ । ଅନୁସରଣ ସାହିତ୍ୟ କ୍ଷେତ୍ରରେ ଦୋଷାବହ ନୁହେଁ, କିନ୍ତୁ ଗୁରୁପ୍ରସାଦ ସେଥିରେ ତାଙ୍କର ସମସ୍ତ ଶକ୍ତି ଖର୍ଚ୍ଚ କରି ଦେଲେ । 'କାଳ ପୁରୁଷ' ପରବର୍ତ୍ତୀ ଅଳ୍ପ ସଂଖ୍ୟକ କବିତାରେ ଗୁରୁ-

ପ୍ରସାଦଙ୍କ ଚେତନା ନଗର ସଭ୍ୟତା ଠାରୁ ଅପସରି ଯାଇଛି । "ସିଡୁଆ" ବା' "କେଉଁ ଘାସ କେଉଁ ବାଲିଚର" ଭଳି କବିତାରେ ଓଡ଼ିଶାର ଗ୍ରାମ୍ୟ ପ୍ରକୃତି ଓ ଜୀବନର ବାସ୍ତବ ବର୍ଣ୍ଣନା ଦେଖିବାକୁ ମିଳେ । ଏହି ପରିବେଶ ସହିତ ତାଙ୍କର କାବ୍ୟ ଚେତନା ଓତଃପ୍ରୋତଃ ଭାବରେ ଜଡ଼ିତ ହୋଇଛି ଏବଂ ଏକ ପ୍ରକାର ଦାର୍ଶନିକତାରେ ଆଚ୍ଛନ୍ନ ହୋଇ ପଡ଼ିଛି ।

ଆଧୁନିକ ଓଡ଼ିଆ କବିତାର ଦ୍ୱିତୀୟ ପର୍ଯ୍ୟାୟରେ ଇଂରେଜ କବି ଏଲିଅଟ୍‌ଙ୍କ ପରୋକ୍ଷ ଓ ପ୍ରତ୍ୟକ୍ଷ ପ୍ରଭାବ ଅନସ୍ୱୀକାର୍ଯ୍ୟ । ତାଙ୍କର ପ୍ରତୀକ ଧର୍ମୀ ଭାଷା, ବ୍ୟଞ୍ଜନାଧର୍ମୀ ଶୈଳୀ, ପୁରାଣ (myth) ର ବ୍ୟବହାର ଓ ଅନୁଶୀଳନ, ସଭ୍ୟମାର୍ଜିତ ଚେତନା ଏବଂ ସର୍ବୋପରି ଏହି ଶତାବ୍ଦୀର ସାଂସ୍କୃତିକ ସଂକଟର ଭୟାବହ ରୂପର ଚୟନ — ଏ ସମସ୍ତ ଗୁଣ ଏହି ପର୍ଯ୍ୟାୟର ଓଡ଼ିଆ କବିତାରେ ଅଳ୍ପ ବହୁତେ ଦେଖିବାକୁ ମିଳେ । ତେବେ ଏଲିଅଟ୍‌ଙ୍କ କବିତାରେ ମଣିଷ ଜୀବନର ଦୟନୀୟତା ପ୍ରତି ଯେଉଁ କଟାକ୍ଷ ପରୋକ୍ଷ ଭାବରେ ରହିଛି, ତାହା ଆଧୁନିକ ଓଡ଼ିଆ କବିତାରେ, ସଚ୍ଚି ରାଉତରାୟ, ଗୁରୁପ୍ରସାଦ ଇତ୍ୟାଦିଙ୍କ କବିତାରେ ନାହିଁ । ତେଣୁ ଶୈଳୀ ଓ ଭାଷା ଦୃଷ୍ଟିରୁ ଏମାନଙ୍କର କାବ୍ୟ କବିତା ଯେତେ ଦୁର୍ବୋଧ ହେଲେ ମଧ୍ୟ, ଯେତେ ପରୀକ୍ଷାଧର୍ମୀ ହେଲେ ମଧ୍ୟ, ଏମାନେ ମଣିଷ ଜୀବନକୁ ମୂଲ୍ୟବାନ୍ ବୋଲି କହିଛନ୍ତି, ମଣିଷ ପ୍ରତି ଶ୍ରଦ୍ଧା ଓ ସଂବେଦନ ପ୍ରକାଶ କରନ୍ତି । ଏହି ଦୃଷ୍ଟିରୁ ରାଧାନାଥୀୟ ମାନବଧର୍ମୀ ପରଂପରା ଏମାନଙ୍କ କବିତାରେ ପରିଣତ ରୂପ ନେଇଛି । ଏମାନଙ୍କ କବିତାରେ ବ୍ୟକ୍ତି ଓ ବିଶ୍ୱର ସମ୍ପର୍କ ବିଶେଷ କ୍ଷୁର୍ଣ୍ଣ ହୋଇନାହିଁ ।

କିନ୍ତୁ ଷଷ୍ଠ ଓ ସପ୍ତମ ଦଶକରେ ଏହି ସମ୍ପର୍କର ସ୍ଥାୟିତ୍ୱ ଓ ଯୁକ୍ତି ଯୁକ୍ତତାକୁ ପ୍ରଶ୍ନ କରାଯାଇଛି । ପାଶ୍ଚାତ୍ୟ ଦେଶରେ ଆଦ୍ଭୁତ ମଣିଷର ନିଃସଙ୍ଗତା ଏକାକୀତ୍ୱ, ବିଚ୍ଛିନ୍ନତାବୋଧ, ଆତ୍ମନିର୍ବାସନ ଭଳି କେତେକ ଦାର୍ଶନିକ ଚିନ୍ତା ଓ ଧାରଣା ଓଡ଼ିଆ କବିଙ୍କୁ ପ୍ରଭାବିତ କରିଛି । ଏହି ପର୍ଯ୍ୟାୟର କାବ୍ୟ ଚେତନା ପାଇଁ ବ୍ୟକ୍ତି ଓ ବିଶ୍ୱର ସଂପର୍କ ଅପେକ୍ଷା ବ୍ୟକ୍ତିର ସୂକ୍ଷ୍ମ ସତ୍ତାର ଉଦ୍‌ଘାଟନ ଅଧିକ ଗ୍ରାହ୍ୟ । ତେଣୁ କବି

ଅତି ତୀବ୍ର ଭାବରେ ଅନ୍ତର୍ମୁଖୀ ହୋଇପଡ଼ୁଛି । ଏଲିଅଟୀୟ ଶୈଳୀ ଓ ଚେତନା ତା' ପକ୍ଷରେ କୃତ୍ରିମ ମନେ ହୋଇଛି । ଏକ ପକ୍ଷରେ ସେ ଏଲିଅଟ୍‌ଙ୍କ କବିତାରେ ଚିତ୍ରିତ ସହରୀ ସଭ୍ୟତାର ଭୟାବହତାକୁ ନିଜେ ସିଧା ଅନୁଭବ କରି ନାହିଁ । ଦ୍ୱିତୀୟତଃ ସେ ଓଡ଼ିଶାର ଗ୍ରାମ୍ୟ ସଂସ୍କୃତିରୁ ବିଚ୍ଛିନ୍ନ ହୋଇ ପଡ଼ୁଛି । ଗାଁରୁ ଆସି, କଲେଜ ପଢ଼ା ସାରି, ସହରରେ ଚାକିରି କରି, କାଫ୍‌କା ଓ ବେକେଟ୍ ପଢ଼ି, ଟିକି ମଇଳା ଲୁଗା ପିନ୍ଧି, ନିଶା ଖାଇ କବି ନିଜକୁ ଖୋଜୁଛି, ନିଜସ୍ୱ ଶକ୍ତିର ଉତ୍ସର ସନ୍ଧାନରେ ବାହାରିଛି । ସଚ୍ଚି ରାଉତରାୟଙ୍କ "ସ୍ୱଗତ" ରେ ଏ ପ୍ରକାର ଚେଷ୍ଟାର ଯେଉଁ ସୂଚନା ଥିଲା ତାହା ଅଧିକ ସ୍ପଷ୍ଟ ହୋଇଛି ରମାକାନ୍ତ ରଥଙ୍କ "କାଠଘୋଡ଼ା"ରେ । ତେବେ ଏହି କବିତା ଗୁଡ଼ିକରେ ଏଲିଅଟୀୟ ଶୈଳୀର ପ୍ରଭାବ ପୂରା ପୂରି ଅନୁପସ୍ଥିତ ନୁହେ । କିନ୍ତୁ କେତେ ଜଣ ଶକ୍ତିଶାଳୀ ତରୁଣତର କବିମାନଙ୍କ କବିତାରେ ଏକ ନୂତନ ଶୈଳୀର ବ୍ୟବହାର କରାଯାଇଛି । ଏହି ଶୈଳୀ ପାରଂପରିକ ଦୃଷ୍ଟିକୋଣରୁ ଯାହା ସୁନ୍ଦର ଓ ଅସୁନ୍ଦର ତାହା ଭିତରର ପାର୍ଥକ୍ୟ ବାରେ ନାହିଁ, ଯେ କୌଣସି ପ୍ରକାରର ବ୍ୟକ୍ତିଗତ ଅନୁଭୂତିକୁ ଚିତ୍ରଣ କରିପାରେ, ଏଲିଅଟୀୟ ସଂଯମକୁ ଉପେକ୍ଷା କରେ । ଏବଂ ଏହି ଶୈଳୀ ଯେଉଁ ବ୍ୟକ୍ତିତ୍ୱକୁ ପ୍ରକାଶ କରେ ତାହା ଯନ୍ତ୍ରଣା ଜର୍ଜରିତ ଓ ଉତ୍‌କ୍ଷିପ୍ତ ।

ଡ଼କ୍ଟର ସୌଭାଗ୍ୟକୁମାର ମିଶ୍ର

---

# ଆଧୁନିକ ଓଡିଆ କାବ୍ୟ ସାହିତ୍ୟର ଆଙ୍ଗିକ

ଶତାବ୍ଦୀର ପରିବର୍ତ୍ତନରେ ଗୋଟିଏ ଜାତିର ଭାଗ୍ୟକିପରି ପରିବର୍ତ୍ତିତ ରୂପ ଗ୍ରହଣ କରେ ତାର ପ୍ରମାଣ ହୋଇଛି ଊନବିଂଶ ଶତାବ୍ଦୀ ଓଡ଼ିଆ ଜାତିର ଭାଗ୍ୟରେ । ଶତାବ୍ଦୀର ପରିବର୍ତ୍ତନରେ ସାହିତ୍ୟ କ୍ଷେତ୍ରରେ ନୂତନ ଦିଗନ୍ତର ଉନ୍ମୋଚନ ସମୟ ସହିତ ସୁନ୍ଦର ସମନ୍ୱୟ ରକ୍ଷାକରି କ୍ୱଚିତ ଏପରି ଘଟିଥାଏ । ଊନବିଂଶ ଶତାବ୍ଦୀ ଓଡ଼ିଆ ସାହିତ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇ ଆତ୍ମପ୍ରକାଶ କରିଛି । ଓଡ଼ିଆ ପ୍ରାଚୀନ କାବ୍ୟ ସାହିତ୍ୟର ସୁଦୀର୍ଘ ରକ୍ଷଣଶୀଳ ପରଂପରାକୁ ତ୍ୟାଗକରି କବିବର ରାଧାନାଥ ସୃଷ୍ଟି କଲେ କାବ୍ୟ ସାହିତ୍ୟରେ ନୂତନ ସୃଷ୍ଟି ଚେତନା । କବିବର ରାଧାନାଥଙ୍କର ଓଡ଼ିଆ କାବ୍ୟ ସାହିତ୍ୟର ପୁନର୍ଗଠନ ପାଇଁ ଯେଉଁ ପ୍ରଚେଷ୍ଟା ତାହା ବିଶେଷ ଭାବରେ କାବ୍ୟର ଆତ୍ମିକ ଭାବ ଅପେକ୍ଷା ଆଙ୍ଗିକ ବିଭବର ଲକ୍ଷ୍ୟଣୀୟ ।

ମଧ୍ୟଯୁଗୀୟ ସାହିତ୍ୟର ଉନ୍ନତ ପରମ୍ପରା ଓ ପାଶ୍ଚାତ୍ୟ ସାହିତ୍ୟର ବିପୁଳ ଅଧ୍ୟୟନ ମଧ୍ୟରୁ କବିବର ରାଧାନାଥଙ୍କର କାବ୍ୟ ସମ୍ଭାରର ସୃଷ୍ଟି । ତାଙ୍କର କାବ୍ୟର ଆଙ୍ଗିକ ମୁଖ୍ୟତଃ ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତା-ଧାରାର ସମନ୍ୱିତ ରୂପ । କବିବର ରାଧାନାଥଙ୍କ କାବ୍ୟ ଓ ତାଙ୍କର ସମସାମୟିକ ବା ପରବର୍ତ୍ତୀକାଳର କବିମାନଙ୍କର କାବ୍ୟ କବିତାରେ ଆଙ୍ଗିକ ବା ଆତ୍ମିକ ଯେ କୌଣସି କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଦେଖା ଦେଲା ତାହା ବହୁ ଅଂଶରେ ବା ସଂପୂର୍ଣ୍ଣଭାବରେ ପାଶ୍ଚାତ୍ୟ ଶିକ୍ଷା ସଭ୍ୟତା ପ୍ରସାରର ଫଳ ବୋଲି ଜଣାଯାଇଅଛି ।

ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗରେ ଯେଉଁ କାବ୍ୟ କବିତା ପ୍ରକାଶ ପାଇଥିଲା ସେଗୁଡ଼ିକର ପ୍ରାଧାନ୍ୟ ଏବେ ମଧ୍ୟ ରହିଛି । ସେଗୁଡ଼ିକ ସ୍ୱତ

ପର୍ଯ୍ୟାପ୍ତ ଭୁକ୍ତ ହୋଇଥିବାରୁ ସେଗୁଡ଼ିକର ରଚନା ଶୈଳୀ ଶାସ୍ତ୍ର ନିୟମକୁ ଅନୁସରଣ କରୁଥିଲା ଏବଂ ସେଗୁଡ଼ିକରେ ଓଡ଼ିଆ ଅପେକ୍ଷା ସଂସ୍କୃତର କାବ୍ୟ ଲକ୍ଷଣ ବିଶେଷ ଲକ୍ଷଣୀୟ। ମଧ୍ୟଯୁଗୀୟ କାବ୍ୟ କବିତାର ଯୁଗରୁଚିକୁ ପରିବର୍ତ୍ତନ କରିବା ପାଇଁ କବିବର ରାଧାନାଥ ଅତି ସତର୍କ ଭାବରେ ପଦକ୍ଷେପ ଗ୍ରହଣ କରିଥିଲେ। ବହୁକାଳରୁ ଚଳି ଆସୁଥିବା କାବ୍ୟର ଦୀର୍ଘ ବିସ୍ତୃତ ରୂପର ଅଙ୍ଗଚ୍ଛେଦ କରି ନୂତନ ଯୁଗ ରୁଚି ସୃଷ୍ଟି କରିବା ପାଇଁ ତାଙ୍କର ଚିଲିକା, ଚନ୍ଦ୍ରଭାଗା, ଉଷା ପ୍ରଭୃତି ଖଣ୍ଡ କାବ୍ୟର ସୃଷ୍ଟି। ତେଣୁ କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ କାବ୍ୟ ପରିବର୍ତ୍ତେ ସୃଷ୍ଟି କଲେ ଖଣ୍ଡକାବ୍ୟ। ଏହା କେବଳ ନୂତନ ଯୁଗରୁଚି ସୃଷ୍ଟି କରିନାହିଁ, କରିଛି ନୂତନ ଏବଂ ପୁରାତନର ଏକ ସହଜ ସମନ୍ୱୟ-ସାଧନ।

ମଧ୍ୟଯୁଗୀୟ କାବ୍ୟ ପରମ୍ପରାରେ ଗଢି ଆସୁଥିବା ରାଜା-ରାଜୁଡ଼ାଙ୍କର ସମାନଧର୍ମୀ ମିଳନାନ୍ତକ ଜୀବନ ଚିତ୍ରକୁ ପରିହାର କରି କବିବର ରାଧାନାଥ ରଚନା କଲେ କେତେକ ପ୍ରଣୟ ମୂଳକ ଟ୍ରାଜେଡି। କେଦାରଗୌରୀ, ଚନ୍ଦ୍ରଭାଗା ପ୍ରଭୃତି ଏହାର ଉଦାହରଣ। ଏହି କାବ୍ୟ ଗୁଡ଼ିକର କଥାବସ୍ତୁରେ ପୁଣି ଦେଖାଦେଲା କବିଙ୍କର ପ୍ରାଚ୍ୟ ପାଶ୍ଚାତ୍ୟ ଚିନ୍ତାଧାରାର ଅପୂର୍ବ ସମନ୍ୱୟ ବିଧାନ। ବିଦେଶୀ କଥା ଓ କାହାଣୀକୁ ଉତ୍କଳୀୟ ପରିଚ୍ଛଦରେ ଭୂଷିତ କରି ନୂତନ କାହାଣୀ ଗଢି ତୋଳିବାରେ କବିଙ୍କର ବୈଶିଷ୍ଟ୍ୟ ପ୍ରମାଣିତ। ଏଥିପାଇଁ କବିଙ୍କୁ ବହୁ ଭାବରେ ସମା-ଲୋଚନାର ଶରବ୍ୟ ହେବାକୁ ପଡ଼ିଥିଲା, ମାତ୍ର ସାହିତ୍ୟର ବ୍ୟାପକ ବାୟୁମଣ୍ଡଳରେ ସେ ପ୍ରକାର ସମାଲୋଚନା ପରବର୍ତ୍ତୀ କାଳରେ ଅସାର ପ୍ରତିପାଦିତ ହୋଇଅଛି। ଅଧୁନାତନ କାଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପାଶ୍ଚାତ୍ୟ ଚିନ୍ତାଧାରାର ପ୍ରତିଫଳନ ଲକ୍ଷ କଲେ କୁହାଯାଇ-ପାରେ ଯେ, ଆଜିର ଏଇ ପରିଣତି ସେଦିନର ସେଇ ପ୍ରଚେଷ୍ଟାର ଫଳ। ଆଜିର ଓଡ଼ିଆ ସାହିତ୍ୟ ପାଶ୍ଚାତ୍ୟ ରୀତିକୁ ଯେପରି ଭାବରେ ଆପଣାର କରି ନେଇଛି ତାହାର ସ୍ୱପ୍ନ ଦେଖିଥିଲେ ଅତୀତରେ କବିବର ରାଧାନାଥ। ତାଙ୍କର ସେହି ସ୍ୱପ୍ନ ଆଜି ସତ୍ୟରେ ପରିଣତ ହୋଇଅଛି ବୋଲି କୁହା-ଯାଇପାରେ।

ପ୍ରାଚୀନ କାବ୍ୟ ସାହିତ୍ୟରେ କବି ମାନେ ନିଜ ନିଜର ପାଣ୍ଡିତ୍ୟ ପ୍ରଦର୍ଶନ ନିମନ୍ତେ ସଂସ୍କୃତ କାବ୍ୟ ସାହିତ୍ୟର ଅନୁକରଣ ବା ଅନୁସରଣରେ ଅଳଙ୍କାରର ବହୁଳ ପ୍ରୟୋଗ କରୁଥିଲେ । ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ଉଭୟ କାବ୍ୟ ମଧ୍ୟରେ ବହୁ ସ୍ଥଳରେ ଦେଖାଯାଉଥିଲା । ନାୟିକାର ରୂପଶୋଭା ଅଳଙ୍କାର ଭାରରେ ସତେ ଯେପରି ପିଷ୍ଟ ହୋଇ ପଡୁଥିଲା । ଆଧୁନିକ ଜୀବନ, ଆଧୁନିକ ଚିନ୍ତାଧାରା ଏହାକୁ ସମର୍ଥନ କରିପାରିଲା ନାହିଁ । ତେଣୁ ଅଳଙ୍କାରର ବହୁଳ ପ୍ରୟୋଗ ପରିବର୍ତ୍ତେ ଉପମା ,ଉତ୍ପ୍ରେକ୍ଷା, ରୂପକ ପ୍ରଭୃତି ସ୍ୱଳ୍ପ ଅର୍ଥାଳଙ୍କାରରେ କବି କାବ୍ୟନାୟିକାକୁ ଏପରି ସଜାଇବାକୁ ଚେଷ୍ଟା କଲେ ଯେ, ତାର ସ୍ୱାଭାବିକ ସୌନ୍ଦର୍ଯ୍ୟ ଅଧିକ ଚିତ୍ତପ୍ରସାଦକାରୀ ବର୍ଣ୍ଣନାର ସହଜ ସୌନ୍ଦର୍ଯ୍ୟରେ ସ୍ୱତଃ ଅଳଙ୍କାର ହୋଇଯାଇଅଛି । କେବଳ କବିବର ରାଧାନାଥଙ୍କ କାବ୍ୟରେ ନୁହେଁ, ଆଧୁନିକ ଯୁଗର ବହୁ କବିଙ୍କ କାବ୍ୟରେ ଏହା ଲକ୍ଷ୍ୟଣୀୟ ।

ଛନ୍ଦ ସଂଯୋଜନା ଆଧୁନିକ କାବ୍ୟର ଅନ୍ୟ ଏକ ବୈଶିଷ୍ଟ୍ୟ । ବିଭିନ୍ନ ଛନ୍ଦରେ କାବ୍ୟ ରଚନା କରିବାର ଜଟିଳ ପଦ୍ଧତି ପରିବର୍ତ୍ତେ ଗୋଟିଏ ଛନ୍ଦରେ ସମଗ୍ର କାବ୍ୟ ରଚିତ ହେଲା । କବିବର ରାଧାନାଥଙ୍କର ମହାଯାତ୍ରାରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ ଏହି କ୍ଷେତ୍ରରେ ଅନ୍ୟ ଏକ ନୂତନ ପଦକ୍ଷେପ । ଭାଷାର କ୍ଲିଷ୍ଟତା ପରିବର୍ତ୍ତେ ସରଳ ସୁବୋଧ ଅଥଚ ଶ୍ରୁତିସୁଖକର ଭାଷା ଦ୍ୱାରା ରାଧାନାଥଙ୍କ କାବ୍ୟ ପ୍ରତିମା ହୋଇଛି ଅଦ୍ଭୁତ ସୁନ୍ଦର ଓ ଆକର୍ଷଣୀୟ । ଯଥାର୍ଥ ଶବ୍ଦପ୍ରୟୋଗ କ୍ଷେତ୍ରରେ ଆଧୁନିକ ଯୁଗର କବିମାନଙ୍କ ମଧ୍ୟରେ ରାଧାନାଥଙ୍କର ସ୍ଥାନ ଅଦ୍ୱିତୀୟ ।

ଭାଷାବିଭବ, ଛନ୍ଦଯୋଜନା, ଅଳଙ୍କାର ପ୍ରୟୋଗ, କାବ୍ୟ ଗଠନ କୌଶଳ ପ୍ରଭୃତିରେ କବିବର ରାଧାନାଥଙ୍କର କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ଶିକ୍ଷା ଓ ସାହିତ୍ୟର ସଂସ୍ପର୍ଶରେ ଯେଉଁ ଜୀବନଦର୍ଶନ ଓ କାବ୍ୟ ପ୍ରତ୍ୟୟର ପରିଚୟ ମିଳିଲା ସେଥିରେ ନୂତନ ଦିଗନ୍ତ ଆଲୋକିତ ହୋଇ ଉଠିଲା । ଦୀର୍ଘକାଳ ଧରି ଯେଉଁ ଜୀବନ ରସ ନିଷେଧର ଦେହଳୀ

ମଧ୍ୟରେ ସ୍ଥବିର ହୋଇଯାଇଥିଲା ରାଧାନାଥଙ୍କ କାବ୍ୟଧାରାର ନୂତନ ବିଭବରେ ତାହା ମୁକ୍ତିର ସ୍ୱାଦ ଅନୁଭବ କଲା ।

କବିବର ରାଧାନାଥ ଓିଭିଡ୍‌ଙ୍କ ଗଳ୍ପ ଅବଲମ୍ବନରେ ବିରହାତ୍ମକ କାବ୍ୟର ପତ୍ତନ କଲେ । କିନ୍ତୁ ଆଧୁନିକତା କେବଳ ବିଷୟ ପରି-ବର୍ତ୍ତନରେ ସୀମିତ ନୁହେଁ । କାବ୍ୟମୂର୍ତ୍ତିର ଏହି ଆଧୁନିକତା ଭାଷା, ଛନ୍ଦ, ରାଗରାଗିଣୀ; ଅଳଙ୍କାର ବିନ୍ୟାସ, ବିଷୟ ସଜ୍ଜାରେ ନାହିଁ; ଏହା ଶିଳ୍ପୀର ସୌନ୍ଦର୍ଯ୍ୟବୋଧରୁ ସମ୍ଭୂତ । ରାଧାନାଥଙ୍କ ଭାଷା ଓ ନିରାଡ଼ମ୍ବର ଓ ସ୍ୱଚ୍ଛନ୍ଦ, ଶବ୍ଦ କସରତ ପାଇଁ ରାଧାନାଥ ସାହିତ୍ୟରେ ଅବକାଶ ନାହିଁ । ପ୍ରାକ୍ ସତ୍ୟଯୁଗର ଗ୍ରାମ୍ୟ ସରଳତା ଓ ମଧ୍ୟଯୁଗୀୟ କ୍ଲିଷ୍ଟତା ବର୍ଜିତ ସହଜବୋଧ ଭାଷାରେ ଶ୍ରୁତିସୁଖକର ରସନିଷ୍ଠ କାବ୍ୟ ସୃଷ୍ଟି କରି ସେ କାବ୍ୟର ଆଙ୍ଗିକରେ ତଥା ଆତ୍ମାରେ ଆଧୁନିକ କାବ୍ୟ ଯୁଗର ଭିତ୍ତି ସ୍ଥାପନ କଲେ । ରାଧାନାଥଙ୍କ କାବ୍ୟରେ ଅଙ୍ଗସଜ୍ଜାର ବୈଶିଷ୍ଟ୍ୟହିଁ ତାଙ୍କର ଶିଳ୍ପୀ ପ୍ରତିଭାର ସର୍ବଶ୍ରେଷ୍ଠ ସାଫଲ୍ୟ ।

ମଧ୍ୟ ଯୁଗର କବିମାନେ ଈଶସ୍ତୁତିରେ କାବ୍ୟର ଆରମ୍ଭ କରୁ-ଥିଲେ । ରାଧାନାଥ ତାଙ୍କର ମହାକାବ୍ୟ ମହାଯାତ୍ରାରେ ସାରଳାଙ୍କ ବନ୍ଦନା କରୁଛନ୍ତି । ଅନ୍ୟାନ୍ୟ କାବ୍ୟରେ ଏହି ରୀତିକୁ ପରିହାର କରିବା ଫଳରେ ଆଙ୍ଗିକରେ ନୂତନତ୍ୱ ସଂପାଦିତ । କାହାଣୀ ଶିଳ୍ପର ସମସ୍ତ ଆଙ୍ଗିକ ତାଙ୍କର କାବ୍ୟ କୃତିକୁ ମନୋଜ୍ଞ ରୂପ ଦାନ କରିଛି । ପୁରାଣ, ଇତିହାସ, କିମ୍ବଦନ୍ତୀ ଓ ଲୋକ ବିଶ୍ୱାସରେ ତାଙ୍କର କାବ୍ୟର କଳେବର ମଣ୍ଡିତ । ଗତାନୁଗତିକ ଶବ୍ଦ ଯୋଜନା ରୀତି ପ୍ରତି ଅନାସକ୍ତି ପ୍ରକାଶ କରି ରାଧାନାଥ ଯେଉଁ ଶବ୍ଦ ଯୋଜନା କଲେ ତାହା ପୂର୍ଣ୍ଣକାରେ ଆତ୍ମାର ସମୀପବର୍ତ୍ତୀ । ଭିନ୍ନ ଭିନ୍ନ ରୂପରେ କାବ୍ୟିକ କାହାଣୀ ଗଠନରେ ତାହା ତାଙ୍କର ଅସାଧାରଣ ଦକ୍ଷତା । ବର୍ଣ୍ଣନାର ପ୍ରାଚୁର୍ଯ୍ୟ ପ୍ରାଚୀନ କାବ୍ୟରେ ଯେପରି ପରିଲକ୍ଷିତ ହୁଏ, ରାଧାନାଥଙ୍କ କାବ୍ୟରେ ତାହା ଭିନ୍ନ ରୂପ ଲାଭ କଲେହେଁ ଇଙ୍ଗିତଧର୍ମିତାର ଉତ୍କର୍ଷତାରେ ପହଞ୍ଚି ପାରିନାହିଁ । ରାଧାନାଥଙ୍କର ସମସାମୟିକ ଓ ପରବର୍ତ୍ତୀ କବି-ଗଣଙ୍କ କାବ୍ୟରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଲକ୍ଷିତ ହୁଏ ନାହିଁ ।

ରାଧାନାଥଙ୍କ ଶୈଳୀ ଅନୁସରଣରେ ପ୍ରାପ୍ତ କାବ୍ୟ ସାହିତ୍ୟର ଅଙ୍ଗ ମଣ୍ଡିତ ।

ପ୍ରାଚୀନ କାବ୍ୟର ବିଷୟବସ୍ତୁର ପରିଧି ଥିଲା ସୀମିତ । ଧର୍ମ ବା ପ୍ରେମକୁ ଆଶ୍ରୟ କରି କାବ୍ୟର କଥାବସ୍ତୁ ରଚିତ ହେଉଥିଲା । ରାଧାନାଥଙ୍କ କାବ୍ୟରେ ପରିବର୍ତ୍ତିତ ପ୍ରେମର ପରବର୍ତ୍ତୀରୂପ ସଂପୂର୍ଣ୍ଣ ଭିନ୍ନ ନୁହେଁ, କିନ୍ତୁ ସାଂପ୍ରତିକ କାବ୍ୟ କବିତାରେ ପ୍ରେମ ଏପରି ମନସ୍ତାତ୍ତ୍ୱିକ ତୀକ୍ଷ୍ଣତା ମଧ୍ୟରେ ପ୍ରକାଶିତ, ଯାହା କାବ୍ୟର ଆଙ୍ଗିକକୁ ସଂପୂର୍ଣ୍ଣ ପରିବର୍ତ୍ତିତ କରିଦେଇଅଛି ।

ରାଧାନାଥ ବା ତାଙ୍କ ପରବର୍ତ୍ତୀ କବିଙ୍କର କାବ୍ୟର ଆଙ୍ଗିକ ଯେଉଁ ମାର୍ଗକୁ ଅନୁସରଣ କରିଥିଲା, ବର୍ତ୍ତମାନ ତାହା ପରିବର୍ତ୍ତିତ । କାବ୍ୟର ବିଷୟବସ୍ତୁର ପରିଧି ଏତେ ବ୍ୟାପକ ଓ ବିସ୍ତୃତ ହୋଇପଡ଼ୁଛି ଯେ, ତାର ପ୍ରକାଶ ଶୈଳୀ ମଧ୍ୟ ବିଚିତ୍ର ଓ ଅଭିନବ ।

ପ୍ରତ୍ୟେକ ଯୁଗର ସାମୂହିକ ବୋଧ ଓ ସାମୂହିକ ଚେତନାରେ ଯେଉଁ ପରିବର୍ତ୍ତନ ଘଟେ ତାହା ସାହିତ୍ୟର ଗତିଧାରାକୁ ନିୟନ୍ତ୍ରିତ କରେ । ଚେତନାରେ ପରିବର୍ତ୍ତନ ଘଟିଲେ ସାହିତ୍ୟର ଆଙ୍ଗିକରେ ପରିବର୍ତ୍ତନ ଆସେ । ଯୁଗର ପ୍ରଭାବକୁ ଅସ୍ୱୀକାର କରି ଆଙ୍ଗିକରେ ପରିବର୍ତ୍ତନ ଆଣିବାକୁ ପ୍ରୟାସ କଲେ ତାହା ବ୍ୟର୍ଥତାରେ ପର୍ଯ୍ୟବସିତ ହୁଏ । ବିଚ୍ଛିନ୍ନତା ଓ ନିଃସଙ୍ଗତାର ବେଦନାବିଦ୍ଧ ସ୍ରଷ୍ଟାର କାବ୍ୟର ଆଙ୍ଗିକ ରୋମାଣ୍ଟିକ୍ ଧର୍ମୀ କବି ରାଧାନାଥଙ୍କ କାବ୍ୟର ଆଙ୍ଗିକଠାରୁ ଭିନ୍ନ ହେବ—ଏହା ସ୍ୱାଭାବିକ । ତେଣୁ ରାଧାନାଥ, ନନ୍ଦକିଶୋର, ଗଙ୍ଗାଧରଙ୍କ କାବ୍ୟର ଆଙ୍ଗିକ ପରବର୍ତ୍ତୀକାଳରେ ନୀଳକଣ୍ଠ, ଗୋପବନ୍ଧୁଙ୍କର କୋଣାର୍କେ, ଧର୍ମପଦ ପ୍ରଭୃତିର ଜାତୀୟବାଦୀ ସାହିତ୍ୟ ସୃଷ୍ଟିରେ ଭାଷା, ଶବ୍ଦସଂଯୋଜନା, ପ୍ରକୃତିବର୍ଣ୍ଣନା, ଅଳଙ୍କାର ପ୍ରୟୋଗ ପ୍ରଭୃତିରେ ନୂତନ ରୂପରେଖ ଭାନୁଜୀରାଓ, ଗୁରୁମହାନ୍ତିଙ୍କ ନୂତନ କବିତାର ସ୍ୱର-ସଂପଦଠାରୁ ନିଶ୍ଚିତ ଭିନ୍ନ ହେବ, ଏହା ସ୍ୱୀକୃତ ସତ୍ୟ ।

ସବୁଜଗୋଷ୍ଠୀର କବିମାନଙ୍କ ରଚନାରେ ଛନ୍ଦଗତ ବିପ୍ଳବ ସୃଷ୍ଟି ହୋଇଥିଲା । କବି ସଚ୍ଚିଦାନନ୍ଦ ରାଉତରାୟ ମୁକ୍ତଛନ୍ଦ କବିତା

ସୃଷ୍ଟି କରି ଛନ୍ଦକୁ କବିତାର ଏକ ଅପରିହାର୍ଯ୍ୟ ବୈଶିଷ୍ଟ୍ୟ ବୋଲି ଅସ୍ୱୀକାର କଲେ । ଆଧୁନିକ କବିତାର ଛନ୍ଦର ଏକାନ୍ତ ଅଭାବ । ସଚ୍ଚିଦାନନ୍ଦ ରାଉତରାୟଙ୍କର ପାଣ୍ଡୁଲିପିର ଦେଶ ଓଡ଼ିଆ କାବ୍ୟକୁ ପୂର୍ବବର୍ତ୍ତୀ ସାହିତ୍ୟାଦର୍ଶରୁ ମୁକ୍ତକରି ସୃଷ୍ଟି କଲା ଏକ ନୂତନ ଦିଗନ୍ତ । ମୁକ୍ତ ଛନ୍ଦର ପ୍ରବର୍ତ୍ତନ ଓ ନୂତନ ଚିତ୍ରକଳ୍ପର ପ୍ରୟୋଗରେ ଆଧୁନିକ କବିତାର ଆଙ୍ଗିକର ରୂପାନ୍ତର ଘଟିଲା କବି ରାଧାମୋହନ ଗଡ଼ନାୟକ, ମାୟାଧର ମାନସିଂହ, କୁଞ୍ଜବିହାରୀ ଦାଶ, ବିନୋଦଚନ୍ଦ୍ର ନାୟକ ପ୍ରମୁଖଙ୍କ ହାତରେ ଗୁରୁପ୍ରସାଦ ମହାନ୍ତିଙ୍କର କାଳପୁରୁଷ ଭାରତୀୟ ସଂସ୍କୃତି ସହିତ ସଂଶ୍ଳିଷ୍ଟ କେତେକ ପ୍ରତୀକ ମାଧ୍ୟମରେ ଏଲିୟଟୀୟ ଚିନ୍ତାଧାରାକୁ ଓଡ଼ିଆ ପାଠକ ସମକ୍ଷରେ ପରିବେଷଣ କରିଅଛି । କାଳପୁରୁଷର ଅଙ୍ଗସଜ୍ଜା ଓଡ଼ିଆ ସାହିତ୍ୟର ଅତ୍ୟାଧୁନିକ କାବ୍ୟ କବିତା ରଚନାପାଇଁ ବଳିଷ୍ଠମାର୍ଗ ପ୍ରଦର୍ଶନ କଲା । କବି ଗୁରୁପ୍ରସାଦ କାଳପୁରୁଷରେ ଯେଉଁ ଆଙ୍ଗିକ ପରିବର୍ତ୍ତନର ସୂତ୍ରପାତ କଲେ ତାହା ଆଙ୍ଗିକ ପରିବର୍ତ୍ତନର ବିଭିନ୍ନ ପରୀକ୍ଷା ନିରୀକ୍ଷା ପାଇଁ ପଥ ଉନ୍ମୁକ୍ତ କଲା ।

ସାଂପ୍ରତିକ କାବ୍ୟ କବିତାରେ ସ୍ଥିତି ଓ ଗତିର ପ୍ରତିଷ୍ଠା, ଆଦର୍ଶ ଓ ବାସ୍ତବ ମଧ୍ୟରେ ଥିବା ପାର୍ଥକ୍ୟକୁ ହୃଦୟଙ୍ଗମ କରିବାର ପ୍ରଚେଷ୍ଟା କେତେଦୂର ସଫଳ ହୋଇପାରିଛି ତାହା କବିମାନଙ୍କର କାବ୍ୟ କବିତାର ପ୍ରକାଶଭଙ୍ଗୀ ତଥା ଆଙ୍ଗିକରୁ ଲକ୍ଷ୍ୟଣୀୟ । ଜୀବନର ମୂଲ୍ୟବୋଧ ଯେତେବେଳେ ଭଗ୍ନଜାନୁ ସେତେବେଳେ କାବ୍ୟ କବିତାରେ ବର୍ଣ୍ଣନାତ୍ମକ ବିଳାସର ଆଟୋପ ଅପେକ୍ଷା ଇଙ୍ଗିତଧର୍ମୀ ସନ୍ନିବୃତ୍ତା ଅଧିକ ଗ୍ରହଣୀୟ ।

ସାଂପ୍ରତିକ ସାହିତ୍ୟରେ କବିତାର ଅଙ୍ଗିକରେ ପରିବର୍ତ୍ତନ ଦେଖାଦେବାର କାରଣ କବିର ଚରମସ୍ୱାଧୀନତା ବା ସ୍ୱତନ୍ତ୍ରତା । ସାଂପ୍ରତିକ କବିତାରେ ରାଜନୀତି, ଅର୍ଥନୈତିକ ବୈଷମ୍ୟ, ଅନ୍ତର୍ଜାତିକ ସମସ୍ୟା, କଣ୍ଟକିତ ଭାବରେ ନଗ୍ନରୂପ ଆଦି ପ୍ରକାଶିତ । କାବ୍ୟ କୌଣସି ବିଷୟ ବସ୍ତୁକୁ ଗ୍ରହଣ ନକରି ମଣିଷ ମନର ଆତ୍ମକୈନ୍ଦ୍ରିକ ସଚେତନ, ବୌଦ୍ଧିକତା, ନିଃସଙ୍ଗତା, ବିଚ୍ଛିନ୍ନତାର ଅନ୍ତଃସ୍ରୋତ ଆଦିରେ ନିଜକୁ ପୂର୍ଣ୍ଣ କରୁଅଛି ।

ଆଧୁନିକ କବିର କବିତାର ଆତ୍ମିକ ପରିବର୍ତ୍ତନ ଫଳରେ କାବ୍ୟରେ ରୂପସଜ୍ଜାରେ ଅନୁରୂପ ପରିବର୍ତ୍ତନ ଘଟିଅଛି । ଆଧୁନିକ କାବ୍ୟରେ ରସର ପ୍ରତିଷ୍ଠା ପାଇଁ ବ୍ୟଗ୍ରତା ନାହିଁ, ଅଛି ବିଚ୍ଛିନ୍ନ ଚେତନାର ଏକତ୍ରୀକରଣ, ଯେଉଁଥିରୁ କବିର ମାନସିକ ସ୍ଥିତିର ବ୍ୟାପକ ବିଭବମାନଙ୍କର ଗ୍ରନ୍ଥନ ସୃଷ୍ଟି ହେବ । ଏହି ମାନସିକ ସ୍ଥିତିକୁ କାବ୍ୟିକ ରୂପ ପ୍ରଦାନ କରିବା ଲକ୍ଷ୍ୟରେ ପ୍ରତୀକବାଦ, ମନସ୍ତତ୍ତ୍ୱ,ରୂପକ, ଚିତ୍ରକଳ୍ପ ଆଦି କବିତାର ଅଙ୍ଗୀଭୂତ । ତେଣୁ କବିତାର ଭାଷାଶୈଳୀ ଓ ରୂପରେ ପରିବର୍ତ୍ତନ କାହାଣୀଧର୍ମୀ କବିତାର ପାଠକ ଲାଗି ସଂପୂର୍ଣ୍ଣ ସ୍ୱତନ୍ତ୍ର ମନେହେଲା ।

ଆଧୁନିକ କାବ୍ୟ କବିତାରେ ଘଟଣାର କ୍ରମପ୍ରକାଶ ନକରି ବିଚ୍ଛିନ୍ନ ଘଟଣାମାନଙ୍କର ଦାର୍ଶନିକ ପ୍ରକାଶ କବି ମାନସରେ ଯେଉଁ ପ୍ରତିକ୍ରିୟା ଓ ଚେତନାର ସଞ୍ଚାର କରିଛି ତାହାକୁ ସେହିପରି ବର୍ଣ୍ଣନା କରାଯାଇଅଛି । ଏହି ପଦ୍ଧତିରେ ଆଧୁନିକ କାବ୍ୟ ତାର ଶୃଙ୍ଖଳା ଓ ବିଷୟ ବସ୍ତୁର କ୍ରମିକତା ହରାଇ ଦୁର୍ବୋଧ ହୋଇ ପଡ଼ିଲା । ଆଙ୍ଗିକର ଏହି ପରିବର୍ତ୍ତନ ପ୍ରଥମେ ଦୁର୍ବୋଧ ଓ ଅସ୍ପଷ୍ଟ ମନେ ହେଲେ ହେଁ ଧୀରେ ଧୀରେ ପାଠକ ଏହା ସହିତ ପରିଚିତ ହୋଇ କବିତାର ଆତ୍ମା ସହିତ ସଂଯୋଗ ସ୍ଥାପନ କରିବାରେ ସମର୍ଥ ହୋଇପାରୁଛି ।

ଦେବେନ୍ଦ୍ର ମହାନ୍ତି
ତା ୫ । ୪ । ୧୯୮୧

# ଆଧୁନିକ ଓଡ଼ିଆ
# କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ

ଡକ୍ଟର କ୍ଷେତ୍ରବାସୀ ନାୟକ
ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ
ବିଭାଗ ରେଭେନ୍ସା କଲେଜ, କଟକ ।

[ ଓଡ଼ିଶା ସାହିତ୍ୟ ଏକାଡେମୀ
ତରଫରୁ ବାରିପଦା ଠାରେ
ଆୟୋଜିତ "ଆଧୁନିକ
ଓଡ଼ିଆ କାବ୍ୟ ସାହିତ୍ୟ' ଶୀର୍ଷକ
ଆଲୋଚନା ଚକ୍ରରେ ପଠିତ
ଆଲୋଚନା ପତ୍ର :
ଏପ୍ରିଲ ୬ ଓ ୭ ତାରିଖ—୧୯୮୧ ]

ଆଲୋଚନାର ପ୍ରଥମ ପର୍ବରେ ବିଷୟଟିର ପରିଭାଷା ଓ ପରିସରର ସଂପର୍କରେ କିଞ୍ଚିତ୍ ସୂଚନା ଦେବା ସଂଗତ ମଣୁଛି । କାରଣ 'ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ତ୍ୟ ସାହିତ୍ୟର ପ୍ରଭାବ' ଏହି ବିଷୟଟି ଆମ ବିଚାର-ବିବେଚନାର ଦୁଇଟି ଦିଗକୁ ସ୍ପର୍ଶ କରୁଛି । ଗୋଟିଏ ଦିଗ ହେଉଛି— ଆମ କାବ୍ୟ କବିତାରେ ପାଶ୍ଚାତ୍ତ୍ୟ ପ୍ରଭାବର ତଥ୍ୟ ପର୍ଯ୍ୟାଲୋଚନା, ଅନ୍ୟ ଦିଗଟି ହେଲା— 'ସାହିତ୍ୟରେ ପ୍ରଭାବ' କଥାଟିର ନାନ୍ଦନିକ ମୂଲ୍ୟ କଳନା । ବିଷୟଟିର ପରିସର ଯେହେତୁ ଏପରି; ତେଣୁ ସାହିତ୍ୟରେ ପ୍ରଭାବ ବିଷୟଟିକୁ କାବ୍ୟ-ତତ୍ତ୍ୱ ଉପର ଗ୍ରହଣ କରିଛି ଏବଂ ସାହିତ୍ୟ ତତ୍ତ୍ୱର ବିଚାର ଭୂମିରେ ଏହାର ତାତ୍ପର୍ଯ୍ୟ କେଉଁ ଦୃଷ୍ଟିରୁ ଚିହ୍ନିତ ହୋଇଛି ବୁଝିଲା ପରେ ସେଥିରୁ ଯେଉଁ ପ୍ରଶ୍ନ ଓ ପ୍ରତିପାଦିତ ସୂତ୍ର ମିଳିବ, ତାହାକୁ ଆଧାର କରି ଆମର ମୂଳ ବିଷୟଟିର ବିବିଧ ପକ୍ଷ ବିଚାର କଲେ ହୁଏତ ନିର୍ଦ୍ଦିଷ୍ଟ ପରିଣତିରେ ପହଞ୍ଚିବା ସଳଖ ଓ ସହଜ ହେବ । ଏଇ କାରଣରୁ ସଂପୃକ୍ତ ଥିଓରି ଆଶ୍ରୟରେ ବିଷୟଟିର ଆଲୋଚନା ପାଇଁ ଏଇ ପ୍ରବନ୍ଧରେ ମୁଁ ଯଥା ସମ୍ଭବ ଉଦ୍ୟମ କରିଛି । ବିଶ୍ୱାସ କରୁଛି, ଆପଣ ମାନଙ୍କର ସଚେତନ ସହଯୋଗ ମୋତେ ଦୁର୍ଲଭ ହେବ ନାହିଁ ।

୧. ସାହିତ୍ୟରେ ପ୍ରଭାବ ବିଷୟକ ଅଧ୍ୟୟନକୁ ତୁଳନାତ୍ମକ-ସାହିତ୍ୟ-ଚର୍ଚ୍ଚାର ପରିସର ଭୁକ୍ତ କରାଯାଇଛି । କୌଣସି ସାହିତ୍ୟ-କୃତି ବା କେହି ସାହିତ୍ୟିକ, ଅନ୍ୟ କାହାକୁ ପ୍ରରୋଚିତ କରୁଥିଲେ ବା ସୃଷ୍ଟି ଲାଗି ପ୍ରେରଣା ଯୋଗାଉଥିଲେ କିମ୍ବା କୌଣସି ପରିଣାମ ଭିତରକୁ ଲେଖକଙ୍କୁ ଟାଣି ନେଉଥିଲେ— ତାହାର ଦୃଷ୍ଟାନ୍ତ ଭିତ୍ତିରେ ସାହିତ୍ୟ ଅନୁଶୀଳନ ବେଳେ ଆମେ ପ୍ରଭାବ ଶବ୍ଦର ପ୍ରୟୋଗ କରିଥାଉଁ । ଏହାକୁ ସାଧାରଣ ଅର୍ଥରେ ପ୍ରଭାବର ସଂଜ୍ଞା ବୋଲି ଧରି ନିଆଯାଇ ପାରେ । କିନ୍ତୁ ତତ୍ତ୍ୱ ଦୃଷ୍ଟିରୁ ( Theory of Literary Influence ) ଏହାର ଭାଷ୍ୟ ଭିନ୍ନ ପ୍ରକାରେ ଚିହ୍ନିତ କରାଯାଉଥିଲେ ମଧ୍ୟ ସାଧାରଣ ପରିଭାଷାକୁ ଏଥିରୁ ବାଦ ଦିଆଯାଇ ନାହିଁ । ଯେଉଁ ଲେଖକଙ୍କ ଲେଖାରୁ ଦେଶୀୟ ପରମ୍ପରା ଓ ସଂସ୍କୃତିର ପ୍ରତିଫଳନ ଆଦୌ ମିଳେ ନାହିଁ ତାଙ୍କୁ ମୌଳିକତା ବର୍ଜିତ ଓ ଅନୁକାରୀ ଜଣେ ଲେଖକ ହିସାବରେ ଗଣା-

ଯାଇଥାଏ । ପ୍ରଭାବର ଗୌରବ ଏଠି ନଥାଏ, ଥାଏ ଅନୁକରଣାତ୍ମକତାର ପରିଚୟ । କିନ୍ତୁ ସାହିତ୍ୟରେ ପ୍ରଭାବର ଅର୍ଥ ଅନୁକରଣ ନୁହେଁ, ବରଂ ଏହା ପରିଗ୍ରହଣ ( Reception )ର ଅଭିବାଚକ । ଜଣେ ଲେଖକ ଅନ୍ୟ ଲେଖକଙ୍କ ସାରସ୍ୱତ-ସଂସର୍ଗରୁ କିଛି ଗ୍ରହଣ କରି ଚର୍ଚ୍ଚାରେ ଆପଣା ଦୃଷ୍ଟିର ଫସଲ ମିଶେଇ ଯାହା ଅମଳ କରନ୍ତି ସେଥିରେ ପ୍ରଭାବର ମୁଦ୍ରାଙ୍କ ଲକ୍ଷିତ ହୁଏ । ପ୍ରତ୍ୟେକ ଲେଖକ ଏହି ସୂତ୍ରରେ ଊଣା ଅଧିକେ ପ୍ରଭାବିତ । ପ୍ରାଚୀନ ସାହିତ୍ୟ ଶାସ୍ତ୍ରରେ ଦୁଇ ପ୍ରକାର କାବ୍ୟର ଉଲ୍ଲେଖ ଅଛି – 'ଅଯୋନି କାବ୍ୟ' ଏବଂ 'ଅନ୍ୟ ଚ୍ଛାୟାଯୋନି କାବ୍ୟ' । ଯେଉଁ କାବ୍ୟ କବି କଣ୍ଠରୁ ସ୍ୱୟଂ ସ୍ୱୟଂ ନିରାଶ୍ରୟରେ ସଂସର୍ଗ ରହିତ ହୋଇ ପ୍ରକାଶ ପାଏ, ତାହା 'ଅଯୋନି କାବ୍ୟ' । ଏଠି ପ୍ରଭାବର ପ୍ରଶ୍ନ ନାହିଁ । ଏପରି କାବ୍ୟକାରଙ୍କ ସଂଖ୍ୟା ବିରଳ । ବୋଧହୁଏ ବ୍ୟାସଙ୍କ ବ୍ୟତୀତ ଆଉ କେହି ଏହି ମର୍ଯ୍ୟାଦାର ଅଧିକାରୀ ହେବେ ନାହିଁ । କିନ୍ତୁ ଯେଉଁ କାବ୍ୟ ଅନ୍ୟ କୌଣସି କୃତିର ଆଲୋକରେ କିମ୍ବା ପ୍ରେରଣାରେ ପରି-କଳ୍ପିତ ହୋଇ ନବୀନ ଅଭିବ୍ୟକ୍ତି ଘେନିଥାଏ, ତାହା 'ଅନ୍ୟ ଚ୍ଛାୟାଯୋନି କାବ୍ୟ' ନାମରେ ନାମିତ ହୁଏ । ଏଠାରେ ଅନୁକରଣାତ୍ମକ ଅଭିପ୍ରାୟ ଅପେକ୍ଷା 'ଅନୁସୃଜନ' ( Transcreation ) ର ପ୍ରୟାସ ସ୍ପଷ୍ଟ । କିଛି ଅନୁକୃତ; କିଛି ମୌଳିକତାର ମେଳରେ ଏହାର ସୃଷ୍ଟି । ଏପରି କାବ୍ୟ-ପ୍ରସଙ୍ଗରୁ ଆମେ ପ୍ରଭାବର ଦୃଷ୍ଟାନ୍ତ ପାଉଁ । ରାଧାନାଥଙ୍କ କାବ୍ୟ-କୃତିରେ ଏହାର ନିଦର୍ଶନ ମିଳେ ।

୨. ତୁଳନାତ୍ମକ-ସାହିତ୍ୟତତ୍ତ୍ୱର ଆଲୋଚକ ମାନେ କହନ୍ତି, ପ୍ରଭାବ-ମୁକ୍ତ ସାହିତ୍ୟ ପ୍ରାପ୍ତ ନାହିଁ କହିଲେ ଚଳେ । କାରଣ ସାହି-ତ୍ୟରେ ପ୍ରଭାବକୁ ଏକ ମନସ୍ତାତ୍ତ୍ୱିକ ପରିଣାମ ବୋଲି ସେମାନେ ସ୍ୱୀକାର କରନ୍ତି । ଲେଖକ-ପାଠକ ସଂପର୍କରୁ ଲେଖକର ଲେଖା ପାଠକର ସ୍ମୃତି-ସାଇତା ହୋଇ ରହିଯାଏ । ପାଠକ କିନ୍ତୁ ନିକାଳେ ଲେଖକ ହୋଇ ଲେଖିଲା ବେଳେ ସ୍ମୃତି-ସାଇତା ବସ୍ତୁ ସଚେତନ ବା ଅବଚେତନ ଅବସ୍ଥାରେ ଲେଖକଙ୍କର ଲେଖାରେ ପ୍ରବେଶ କରେ । ଏଠି ଲେଖକ ପୂର୍ବବର୍ତ୍ତୀ ଲେଖକଙ୍କ ଦ୍ୱାରା ପ୍ରଭାବିତ ହେଲା ନାହିଁକି ? ପୁନଶ୍ଚ-ସାରସ୍ୱତ ପରମ୍ପରାରେ ସଞ୍ଚିତ ପୁଞ୍ଜିରୁ ମଧ୍ୟ 'ପ୍ରଭାବ'ର କାହାଣୀ ଶୁଣାଯାଇ ପାରେ। କିପରି ? ଆମେ ଦେଖୁଁ, – ପ୍ରବହମାନ ସମୟର ଧାର ମହାକାଳ

( Time Infinit ) ର ଗୋଟିଏ ସ୍ତର ଅତିକ୍ରମ କରି ଅନ୍ୟ ସ୍ତରରେ ପ୍ରବେଶ କଲାବେଳେ ଅତୀତ ସ୍ତରର ପଦ-ଚିହ୍ନ ସକଳ ନୂତନ ସ୍ତରର ସାମ୍ରାଜ୍ୟ ଭିତରେ ବଞ୍ଚି ଦେଇଥାଏ । ସମୟ-ଗର୍ଭରେ ସ୍ତର ପରେ ସ୍ତର ସାଇତାହୋଇ ରହିଥିବା ଯୁଗଯୁଗର ସମ୍ପଦ 'ପରଂପରା' ( Tradition ) ନାଁରେ ଗୋଟିଏ ପୁରୁଷ ( Generation ) ହାତରୁ ଅନ୍ୟ ପୁରୁଷ ହାତକୁ ସ୍ୱଚ୍ଛନ୍ଦରେ ଚାଲିଯାଏ । ନିର୍ଦ୍ଦିଷ୍ଟ ଭାବେ କେତେ-ବେଳେ ଏହି ହସ୍ତାନ୍ତର ଘଟେ, କିପରି ଘଟେ – ଏହାକୁ ପରୀକ୍ଷା କରି ଜାଣିବା ସହଜ ନୁହେଁ । କିନ୍ତୁ ମାନବ ସଭ୍ୟତାର ଇତିହାସର ଏହା ଏକ ନିତ୍ୟ-ପ୍ରକ୍ରିୟା, ଯୁଗ ଯୁଗରୁ ଚାଲି ଆସୁଛି, କେଉଁଠି ଭିଟା ପଡ଼ିନାହିଁ । ଗତାୟୁ-ସମୟ ( Time Past ) ର ଆତ୍ମା, ମୂର୍ତ୍ତିମାନ-ସମୟ ( Time Present ) ଗର୍ଭରେ ଧରା ଦେଉଛି । ମୂର୍ତ୍ତିମାନ ସମୟ ପୁଣି, ଅନାଗତ ସମୟ ( Time Future ) ସହ ସଂଗମ ଲାଗି ପଥ ଖୋଜୁଛି । ଏହି କ୍ରମରେ ପରମ୍ପରା, ନବୀନକୁ ପ୍ରଭାବିତ କରୁଛି । ଏଣୁ ବିଜ୍ଞମାନଙ୍କ ମତରେ, 'ସାହିତ୍ୟ ପରମ୍ପରା' ର ଅନ୍ତର୍ବେଦୀରେ ଯୁଗ ଯୁଗର ପ୍ରଭାବ ବିଦ୍ୟମାନ । ରାଧାନାଥଙ୍କ କାବ୍ୟ କୃତିରେ କାଳିଦାସ, ଭବଭୂତି ଅଛନ୍ତି, ଭଞ୍ଜ ଅଛନ୍ତି, ପାଶ୍ଚାତ୍ୟ କବିମାନେ ଅଛନ୍ତି ସ୍ୱୟଂ ରାଧାନାଥ ବି ଅଛନ୍ତି । ଏହାର ଅର୍ଥ ହେଲା – ପରଂପରାର ଦେୟ ଏବଂ ବ୍ୟକ୍ତିଗତ ପ୍ରତିଭାର ସ୍ପର୍ଶରୁ ସାହିତ୍ୟ ସ୍ରୋତର ଅଭିବୃଦ୍ଧି ସଚରାଚର ସାଧିତ ହୋଇଛି । ଏହି ମର୍ମରେ ଟି. ଏସ. ଏଲିଅଟଙ୍କର ( Tradition and Individual talent) ର ବକ୍ତବ୍ୟକୁ ସ୍ମରଣ କରାଯାଇପାରେ । ନବଜାତ ପ୍ରତିଭା ଠାରେ ପରମ୍ପରାର ପ୍ରଭାବ ଓ ପ୍ରେରଣାକୁ ଚିନ୍ତାବିତ୍ ମାନେ ସ୍ୱୀକାର କରିଛନ୍ତି ।

୩ . ଦୁଇଟି ଶକ୍ତିର ଐଶ୍ୱର୍ଯ୍ୟ ବଳେ ସାହିତ୍ୟ ଦେଶ କଳା-ତୀତ ଆଦର ଭୋଗ କରେ । ଏକ ପକ୍ଷରେ ଜାତୀୟ ଐତିହ୍ୟ ଓ ଜୀବନର ପ୍ରତିବିମ୍ବନ-ଶକ୍ତି; ଅନ୍ୟ ପକ୍ଷରେ ସାର୍ବଭୌମ ମାନବତ୍ୱର ଭାବ-ମୂର୍ତ୍ତି ରୂପାୟନ ବଳରେ ଏହା ଅକ୍ଷର କୀର୍ତ୍ତିର ଗୌରବ ଅର୍ଜନ କରେ । ଏହି ଶକ୍ତି ଦ୍ୱୟ ମଧ୍ୟରୁ ପ୍ରଥମଟି ଦେଶର ଦାୟାଦ ମାନଙ୍କୁ ପ୍ରେରଣା ଦେଇ-ଥାଏ, ଦ୍ୱିତୀୟଟି ଦେଶର ମାନବ-ସତ୍ତାକୁ ସର୍ବ ଦେଶର ମାନବ-ସତ୍ତା ସହିତ ଯୁକ୍ତ କରେ, ସାହିତ୍ୟ-ଶକ୍ତିର ଏହି ପ୍ରେରଣାରୁ କାଳିଦାସଙ୍କ

ଶକୁନ୍ତଳା ଗେଟେଙ୍କୁ, ଓମାର-ଖୈୟାମ୍ ଫିଜରାଲ୍ଡଙ୍କୁ ସମ୍ଭବତଃ ମନ୍ତ୍ରମୁଗ୍ଧ କରିଥିଲା; ଓଭିଡ଼, ଭର୍ଜିଲ, ମିଲଟନ ପ୍ରଭୃତିଙ୍କ ଦ୍ୱାରା ରାଧାନାଥ ଅନୁପ୍ରାଣିତ ହୋଇଥିଲେ । ଦାନ୍ତେ, ସେକ୍ସପିୟର, ଓ୍ୱାର୍ଡସଓ୍ୱାର୍ଥ; ଇଟସ୍, ରବୀନ୍ଦ୍ରନାଥଙ୍କର ପ୍ରେରଣାରେ ମାନସିଂ, ବୈକୁଣ୍ଠନାଥ; କାଳନ୍ଦୀଚରଣ, ଗୋଦାବରୀଶ ଓ କୁଞ୍ଜ ବିହାରୀଙ୍କ କବି-ଚିତ୍ତ ହୁଏତ ପୁଲକିତ ହୋଇ ଉଠିଥିଲା । ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, ବିନୋଦ ନାୟକଙ୍କ ଠାରୁ ଗୁରୁ ମହାନ୍ତି, ରମାକାନ୍ତ; ସୀତାକାନ୍ତଙ୍କ ପର୍ଯ୍ୟନ୍ତ ଏବଂ ଅନ୍ୟାନ୍ୟ କବି-କୁଳଙ୍କ କାବ୍ୟ-ଜଗତକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଟି. ଏସ. ଏଲିୟଟ, ଓ୍ୱାଲ୍ଟ ହୁଇଟ ମାନ ମାୟୋକୋଭସ୍କି ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ ଓ ଭୀମ ଭୋଇ ପ୍ରଭୃତି କବିଗଣ ପ୍ରେରଣା ଯୋଗାଇ ପ୍ରଭାବିତ କରିଛନ୍ତି । ଅତଏବ ମନେହୁଏ, କବିଙ୍କ କାବ୍ୟ-ପରିସରକୁ କୌଣସି ନା କୌଣସି ସୂତ୍ରରୁ ପ୍ରଭାବର ଧାରା, ତାହା ଦେଶୀ ହେଉ କି ବିଦେଶୀ ହେଉ ଯେ ବହି ଆସିଛି—ଏଥିରେ କୌଣସି ସନ୍ଦେହ ନାହିଁ । ବେଳେ ବେଳେ ମଧ୍ୟ 'ମିଶ୍ରିତ ପ୍ରଭାବ'ର ପରିଣାମରୁ ଜଣେ ଜଣେ କବି ଆପଣାର ସୃଷ୍ଟିର ଗତିପଥ ଗଠନ କରିଛନ୍ତି । କବି ରାମଶଙ୍କର ରାୟଙ୍କର 'ପ୍ରେମତରଙ୍ଗ ଗାଥା' ( ୧୮୭୮ ) କବିତାରେ ସେକ୍ସପିୟର, ଟେନିସନ, ଗୋଲ୍ଡସ୍ମିଥ ପ୍ରଭୃତି କବିଙ୍କ ମିଶ୍ରିତ ପ୍ରଭାବ ଆମେ ଲକ୍ଷ କରିଛୁଁ, ଅନ୍ୟ ପକ୍ଷରେ ଗୁରୁ ମହାନ୍ତିଙ୍କ କବିତାରେ ଟି. ଏସ. ଏଲିୟଟଙ୍କ ଏକକ ପ୍ରଭାବ ମଧ୍ୟ ଦୃଷ୍ଟିଗୋଚର ହୋଇଛି । ତେବେ ଏହାବି ହୋଇଛି ଯେ ବିଭିନ୍ନ କିସମର ପ୍ରଭାବ ସତ୍ତ୍ୱେ କବିମାନେ ନିଜ ଗୁଣରେ ସାହିତ୍ୟ ରାଜ୍ୟରେ ସମ୍ମାନ ପାଇଛନ୍ତି; ପ୍ରଭାବକୁ କେହି କଳଙ୍କ ବୋଲି ଅଭିହିତ କରିନାହିଁ । ବରଂ ତୁଳନାତ୍ମକ-ସାହିତ୍ୟ ତତ୍ତ୍ୱରେ ପ୍ରଭାବକୁ ଦେଶ ବିଦେଶରେ ସାହିତ୍ୟିକ-ମର୍ଯ୍ୟାଦାର ପ୍ରତୀକ ( Literary Status Symbol ) ରୂପେ ଗ୍ରହଣ କରାଯାଇଛି । ଅବଶ୍ୟ ପ୍ରଭାବ ବିତରଣ ଓ ପ୍ରଭାବ ଗ୍ରହଣ ଅନୁଯାୟୀ ଗୌରବ ଅନୁଭବର ତାରତମ୍ୟ ଅଛି ।

୪. ତେବେ ବର୍ତ୍ତମାନ ପ୍ରଶ୍ନ ହେଉଛି— ସାହିତ୍ୟରେ ପ୍ରଭାବର ଭୂମିକା ଯଦି ଏତିକି ଏକ ସ୍ୱାଭାବିକ ବ୍ୟାପାର, ତାହାଲେ କୌଣସି

ସାହିତ୍ୟରେ ପ୍ରତିଫଳିତ ପ୍ରଭାବର ଅଧ୍ୟୟନ ଲାଗି ସମ୍ଭାବ୍ୟ ସୂତ୍ର କଣ ? ଅନୁଶୀଳନ ବେଳେ ପ୍ରଭାବର ଉତ୍ସ ନିରୂପଣ ଓ ଆକାର ପ୍ରକାର ପର୍ଯ୍ୟବେକ୍ଷଣ (Source and model study) ଏକାନ୍ତ ବାଞ୍ଛନୀୟ । ଉତ୍ସ ଓ ଆକାରର ଅଧ୍ୟୟନ ସମ୍ବନ୍ଧରେ 'ସାଦୃଶ୍ୟର ସନ୍ଧାନ'କୁ ମଧ୍ୟ ମୌଳିକ ପନ୍ଥା ରୂପେ ଗ୍ରହଣ କରିବାକୁ ପଡ଼ିଥାଏ । ଫଳମିତ ଚିନ୍ତାଧାରା ଓ ଭାବରାଜିର ପ୍ରକୃତ ବିଶ୍ଳେଷଣ, ଓ କବିଙ୍କ କାବ୍ୟ-କୌଶଳର ରୂପ-ରୀତି ପର୍ଯ୍ୟାଲୋଚନାରୁ କବିଙ୍କର କାବ୍ୟ କେଉଁ ପରିମାଣରେ ପ୍ରଭାବ-ମଣ୍ଡିତ ତାହା ବୁଝିବା ସହଜ ହୁଏ । ପ୍ରଭାବ-ଗ୍ରହୀତା କବି, ନିଜ ଲେଖାକୁ କେଉଁ ଆକାର ଦେଇଛନ୍ତି, ଆପଣା କବି-ଦୃଷ୍ଟି ବିନିଯୋଗରେ ନବୀନତାର କିଛି ଆଭାସ ଅଛି କି ନାହିଁ — ତାହା ପ୍ରଭାବ ଅଧ୍ୟୟନ ଅବସରରେ କରି ଯାଇପାରେ । ଏହାକୁ ଜାଣିବା ପାଇଁ ଆଲୋଚନାରେ ଅନ୍ତର୍ମୁଖୀନତା ଓ ଆତ୍ମସ୍ଥିତିର ବିଶ୍ଳେଷଣ ଆବଶ୍ୟକ । ଅତଏବ ସାହିତ୍ୟରେ ପ୍ରଭାବ ଅଧ୍ୟୟନର ଏପରି କେତୋଟି ଆଶ୍ରୟ-ସୂତ୍ର ଜରିଆରେ ବିଷୟଟିର ଅନୁଶୀଳନ କରିବା ସଂଗତ ହେବ ।

୫. ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଇଂରାଜୀ ଭାଷା-ସାହିତ୍ୟ ସଂସର୍ଗ ଜରିଆରେ ଓଡ଼ିଆ କବି-କୁଳ ଆମ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବର ପ୍ରତିଫଳନ ଘଟାଇଥିବା ଆମେ ଲକ୍ଷ୍ୟକରୁଁ । ପାଶ୍ଚାତ୍ୟ ପ୍ରଭାବରୁ ଓଡ଼ିଆ କାବ୍ୟ-କବିତାର ଗଠନ-କଳା ବଦଳି ଗଲା, ଓ ବୈଚିତ୍ର୍ୟ ବିଭ୍ରତିଲା । ଏକାଳର କବି-ସମାଜ,ପାଶ୍ଚାତ୍ୟ ପ୍ରେରଣାକୁ ଶୁଭ ଦୃଷ୍ଟିରେ ଦେଖିଥିଲେ, ବିଶ୍ୱାସ କରିଥିଲେ ଯେ—ପାଶ୍ଚାତ୍ୟ ପ୍ରଭାବର ପରିଣାମରୁ ଏ ଦେଶମାଟିରେ ନୂତନ ଜୀବନୀଶକ୍ତିର ସଂଚାର ଘଟିବ, ବୌଦ୍ଧିକ ଦିଗ୍ ବଳୟରେ ଆଧୁନିକ ଚେତନାର ଅରୁଣ ଆଭା ଖେଳିଯିବ । କବି ଓ କଥାକାର ଗୋପାଳ ବଲ୍ଲଭ ଦାସ (୧୮୭୦-୧୯୧୪) 'କୋଣାର୍କେ ଭାଷା' କବିତାରେ ପାଶ୍ଚାତ୍ୟ ଶିକ୍ଷା-ସଂସ୍କାର ଓ ସାହିତ୍ୟ ପ୍ରେରଣାରୁ ଦେଶରେ ନବଯୁଗାବତରଣର ପଥ ପ୍ରସ୍ତୁତ;—ଏହା ଅନୁଭବ କରିଥିଲେ । ରାଧାନାଥ, ମଧୁସୂଦନ ପ୍ରଭୃତି କବି-ଗଣ ପାଶ୍ଚାତ୍ୟ-ଚେତନାର ପ୍ରଭାବରେ ନବଯୁଗର ଅଭ୍ୟୁଦୟକୁ ସ୍ୱୀକାର କରିଥିଲେ । ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟର ଉନ୍ମେଷ ମୂଳରେ ଥିଲା ପାଶ୍ଚାତ୍ୟ

ସାହିତ୍ୟ ଓ ଶିକ୍ଷା-ସଭ୍ୟତାର ଗୂଢ଼-ସଂଶ୍ଳେଷ ପ୍ରଭାବ । ସେଥିଆଙ୍କ ମନନ-ଭୂମିକୁ ବିବର୍ଦ୍ଧିତ କରିବା ଅଭିଯାନରେ ପାଶ୍ଚାତ୍ୟ-ଚେତନାଦର୍ଶର ଦାୟ ବେଶୀ । ସାହିତ୍ୟ ତାର ଏକ ପକ୍ଷମାତ୍ର ।

ଏ କାଳର ବିଶିଷ୍ଟ କବି ରାଧାନାଥଙ୍କ ଠାରେ ପାଶ୍ଚାତ୍ୟ ପ୍ରଭାବ ଅପରିମେୟ । ପାଶ୍ଚାତ୍ୟ ସାହିତ୍ୟର କ୍ଲାସିକ ଓ ରୋମାଣ୍ଟିକ କବିମାନଙ୍କ ପ୍ରେରଣାରେ ରାଧାନାଥଙ୍କ କାବ୍ୟ-ଜଗତ ପରିପୁଷ୍ଟ । ରାଧାନାଥ ମଧୁସୂଦନଙ୍କର ସଂକଳନ କବିତାବଳୀ (୧୮୭୬) ହେଉଛି ଆଧୁନିକ କାବ୍ୟ-କଳାର ଆଦି ସ୍ଥାପତ୍ୟ । ଏଥିରେ ସଂକଳିତ ରାଧାନାଥଙ୍କର 'ପବନ' ଏବଂ ମଧୁସୂଦନଙ୍କର 'ନିଶୀଥ ଚିନ୍ତା', 'ଶ୍ମଶାନ' ଓ କବି-ଦ୍ୱୟଙ୍କର ଅନ୍ୟାନ୍ୟ କବିତାରେ ଇଂରେଜୀ ରୋମାଣ୍ଟିକ କବିଦୃଷ୍ଟିର ପ୍ରତିଫଳନ ପରିଦୃଷ୍ଟ ହୁଏ । ସେଲି-ଓ୍ୱାର୍ଡସଓ୍ୱାର୍ଥଙ୍କ ପ୍ରକୃତି-ପ୍ରୀତିର ମିଶ୍ରରାଗ, ରାଧାନାଥଙ୍କ 'ପବନ' କବିତାରେ ସ୍ପଷ୍ଟ । ପ୍ରକୃତିଠାରେ କାଳ ବା Eternityର ଅନାଦିତ୍ୱ ଆରୋପଣ କିମ୍ବା ପ୍ରକୃତିକୁ Wild Spirit ରୂପେ ଅନୁଭବ କରିବା ରୋମାଣ୍ଟିକ କବି-ଭଙ୍ଗୀ,— ଏହାର ପ୍ରତିରୂପ ଏମାନଙ୍କ କବିତାରେ ସୁଲଭ । କଲରିଜ୍‌ଙ୍କର Frost at midnight ଓ ସେଲିଙ୍କର To the Night କବିତାର ପ୍ରତିଧ୍ୱନି, ମଧୁସୂଦନଙ୍କର 'ନିଶୀଥ ଚିନ୍ତା' କବିତାରେ ଶୁଣାଯାଏ । କବି କଲରିଜ୍, ନିଶବ୍ଦ ରାତିକୁ Cradled Babe ରୂପ କଳ୍ପନାରେ ଚିତ୍ରିଲା ବେଳେ, ମଧୁସୂଦନ 'ଶାନ୍ତ-ଦେବୀ' ରୂପରେ ଦେଖିଛନ୍ତି । ପରିକଳ୍ପନାର ଅନ୍ତର୍ଭୂମିରେ ସାଦୃଶ୍ୟ ଅଛି । ମଧୁସୂଦନଙ୍କ ଶ୍ମଶାନ କବିତାରେ ମୃତ୍ୟୁର ନାୟକ ଶମନ, Death the Leveller ଭୂମିକାରେ ଅବତୀର୍ଣ୍ଣ ହୋଇଛି । କବି ଜେମସ୍ ସାର୍ଲେ (୧୫୯୬-୧୬୬୬)ଙ୍କ ମୃତ୍ୟୁଚିନ୍ତାର ପ୍ରତିଧ୍ୱନି ଏବଂ ଥମାସ ଗ୍ରେ (୧୭୧୬-୧୭୭୧)ଙ୍କ 'Country church yard' ଶୋକ ସଂଗୀତର ଅନୁରଣନ ଏଥିରେ ଶୁଣା ଯାଇଛି । କବି ସ୍କଟ (୧୭୭୧-୧୮୩୨) ଙ୍କ ପ୍ରେରଣାରୁ ରାଧାନାଥ ସ୍ୱଦେଶର ଇତିହାସ,ମିଥ୍ ଓ ପ୍ରାକୃତିକ ପରି-ବେଶକୁ କାବ୍ୟସାମଗ୍ରୀଭୁକ୍ତ କରିଛନ୍ତି । ଓ୍ୱାର୍ଡ୍‌ସଓ୍ୱାର୍ଥ, ବାଇରନ୍, କୀଟସ୍ ଇତ୍ୟାଦି କବିଙ୍କର ରସ-ମାନସ ଏବଂ ପ୍ରକୃତି ପ୍ରତି ସେମାନଙ୍କ

ଦୃଷ୍ଟିକୋଣର ପ୍ରଭାବ, ରାଧାନାଥ ଓ ସମକାଳୀନ କବି ସମାଜକୁ ଅନେକ ପରିମାଣରେ ସ୍ପର୍ଶ କରିଛି ।

ପାଶ୍ଚାତ୍ୟ ପ୍ରେରଣା ହେତୁ କବି ଦୃଷ୍ଟିରେ ଚିଲିକା ହୋଇଛି କାବ୍ୟ-ନାୟିକା— Lady of the Lake । ରାଧାନାଥଙ୍କ ମନରେ ଇଂଲଣ୍ଡ ଲେକ୍ ପୋଏଟ୍ ମାନଙ୍କର ରୁଚି ଓ ଆଚରଣର ପ୍ରଭାବ ଏପରି କାର୍ଯ୍ୟ କରିଛି ଯେ ସେ, ସେମାନଙ୍କର ( କଲରିଜ, ସଉଦି, ଓ୍ବାର୍ଡ୍‌ସଓ୍ବାର୍ଥ ) ଅନୁପନ୍ଥୀ ହୋଇ ଚିଲିକାର ପଶ୍ଚିମ ତୀରରେ ପଶ୍ଚିମ ଜୀବନ ବଞ୍ଚେଇବା ଲଗି ଆଶା ପୋଷିଛନ୍ତି । ଧବଳେଶ୍ବର ପଠାରେ ଶଶିଭୂଷଣଙ୍କ ଦ୍ବାରା 'କଳ୍ପିତ କଳପୁର' ନିର୍ମାଣ ମଧ୍ୟ ଏଇ ଅଭିପ୍ରାୟର ଅନ୍ୟ ଏକ ପରିଣାମ । ପାଶ୍ଚାତ୍ୟ ସୂତ୍ରରୁ ଆହୃତ ଦୃଷ୍ଟିଭଂଗୀ ଓ ରାଧାନାଥଙ୍କ ପ୍ରେରଣାରୁ ଓଡ଼ିଶାରେ 'Lake School of thought' ର ପ୍ରସାର ଘଟିଛି । ବାସୁଦେବ ସୁଢ଼ଳ ଦେବଙ୍କର'ଚନ୍ଦ୍ରେ ପୂଜା', ଛତିଶଗଡ଼ର ଓଡ଼ିଆ କବି ଲୋଚନ ପ୍ରସାଦ ପାଣ୍ଡେୟଙ୍କର 'ମହାନଦୀ', ଦାମୋଦର ମିଶ୍ରଙ୍କ ଅଂଶୁମା ( ୧୮୯୩ ), ଚିନ୍ତାମଣି ମହାନ୍ତିଙ୍କ ମେଘାସନ, ମହେନ୍ଦ୍ର, ସାଳନ୍ଦୀ, ମୃତ୍ୟୁଞ୍ଜୟ ରଥଙ୍କ ନଗଜ ( ୧୯୧୦ ), ଭଗିରଥି ମହାପାତ୍ରଙ୍କ 'ବୈତରଣୀ' ( ୧୯୧୦ ), ଚନ୍ଦ୍ରମଣି ଦାଶଙ୍କ ଧାମରା, ବ୍ୟାସସରୋବର , ଜୟକୃଷ୍ଣ ମିଶ୍ରଙ୍କର ଅଂଶୁପା, ଦ୍ରୋଣଯାତ୍ରା, ମାଳ୍ୟଗିରି, କପିଳାସ ପ୍ରଭୃତି ହେଉଛି ଭୌଗୋଳିକ ପରିବେଶ ପ୍ରୀତି ଓ ଲେକ୍ ଉପାସନା ମନୋଭାବର ସାର୍ଥକ ଦୃଷ୍ଟାନ୍ତ ।

୭. ପାଶ୍ଚାତ୍ୟ ବିଜ୍ଞାନ ଶିକ୍ଷା ପ୍ରଭାବରୁ ଉନବିଂଶ ଶତାବ୍ଦୀର କବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ଓଡ଼ିଆରେ ଚମକ ପ୍ରଦ ବୈଜ୍ଞାନିକ ଆବିଷ୍କାରର କାବ୍ୟରୂପ ଅଂକନ କରିଛନ୍ତି । ତାଙ୍କର 'ପ୍ରକୃତି' (୧୯୧୧) ବୈଦିକ ପ୍ରକୃତି ଯୌନ-ନିର୍ବାଚନ (୧୯୧୨) ପ୍ରଭୃତି ସର୍ଗ କବିତାରେ ଡାରଉଇନ୍‌ଙ୍କ ବିବର୍ତ୍ତନ ବାଦ, ଏବଂ ପ୍ରାକୃତିକ ଯୌନ-ପ୍ରସଙ୍ଗ ପ୍ରକାଶ ପାଇଛି । ବୈଜ୍ଞାନିକ ତଥ୍ୟକୁ କାବ୍ୟ -ରୂପେ ଦେବାରେ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ହେଉଛନ୍ତି, ସେକାଳର ଜଣେ ଅଗ୍ରଗାମୀ ପ୍ରତିଭା ।

ଏହି ଦୃଷ୍ଟିରୁ ଡକ୍ଟର ମାୟାଧର ମାନସିଂ, ତାଙ୍କୁ ଓଡ଼ିଆ କାବ୍ୟ-କଳାର ନବ ଦିଗ ଉନ୍ମୋଚକ ବୋଲି ଅଭିହିତ କରିଥାନ୍ତି ।

୨. ଓଡ଼ିଆ କାବ୍ୟ କବିତାରେ ପ୍ରତିଫଳିତ ଜାତୀୟ ଭାବନା ସଂପୃକ୍ତ ଦେଶାତ୍ମବୋଧକ ଚିନ୍ତାଧାରାର ଉନ୍ମେଷ ଓ ପ୍ରସାର ମୂଳରେ ପାଶ୍ଚାତ୍ୟ ପ୍ରଭାବର ପ୍ରତିଧ୍ୱନି ଶୁଣାଯାଏ । ନନ୍ଦକିଶୋରଙ୍କର କେତେକ କବିତାର ଇଂରେଜୀ କବି ଥମାସ କ୍ୟାମ୍ପବେଲ ( ୧୭୭୭-୧୮୪୯ ), ସାର ଓ୍ୱାଲଟର ସ୍କଟଙ୍କର ଦେଶାତ୍ମବୋଧକ ଭାବନାର ସାଧାରଣ ସ୍ୱର ଶୁଣାଯାଏ । କବି ନନ୍ଦ କିଶୋରଙ୍କର 'ଜନ୍ମଭୂମି' କବିତା ଗୁଚ୍ଛରୁ ଏହାର ସଙ୍କେତ ମିଳିଯାଏ । କବିଙ୍କର 'ଓଡ଼ିଆ ଲଳନା' ( ୧୯୦୦ ) କବିତାରେ ଅନ୍ତରମ୍ପାରେ ଇଂରେଜୀ କବି ଆଲଫ୍ରେଡ ଅଷ୍ଟିନ୍ଙ୍-(୧୮୩୫-୧୯୧୩ ) କର The English Maid କବିତାର ଭାବ-ରୂପ ପ୍ରଚ୍ଛନ୍ନ । ଓଡ଼ିଆ ଲଳନାଙ୍କ ମୁକ୍ତି ଲାଗି ଚେତନା ଜାଗରଣର ସାଧୁ ଅଭିଳାଷ ଏବଂ ଊନବିଂଶ ଶତକର ଇଂଲଣ୍ଡରେ ଦେଖା ଦେଇଥିବା ନାରୀ ସ୍ୱାଧୀନତା ଆନ୍ଦୋଳନ ଓ ଏହି କାଳରେ ଭାରତରେ ବ୍ରାହ୍ମ ସମାଜ ମାଧ୍ୟମରେ କାର୍ଯ୍ୟକାରୀ ହୋଇଥିବା ବିଭିନ୍ନ ସଂସ୍କାର ବୃତ୍ତିର ଏକ କାବ୍ୟିକ ପ୍ରତିରୂପ ଏଥିରେ ଅଂକିତ ହୋଇଛି । ନନ୍ଦ କିଶୋରଙ୍କର 'ପଲ୍ଲୀଚିତ୍ର' କବିତା ଗୁଚ୍ଛର ଅଧିକାଂଶ କବିତା ( ଗ୍ରାମ ପାଠଶାଳୀ, ଗ୍ରାମ ଶ୍ମଶାନ, ଗ୍ର ମଶାଳା ) ଗୋଲ୍ଡସ୍ମିଥଙ୍କର The Deserted village' ପ୍ରେରଣାରୁ ଜନ୍ମ । କବିଙ୍କର 'କୃଷ୍ଣକୁମାରୀ' କାବ୍ୟ-କଳ୍ପନା ମୂଳରେ ସଂଗୁପ୍ତ ଥିବା ଇତିହାସ ଉପାସନା ମନୋବୃତ୍ତି ଓ ଜାତୀୟ ଐତିହ୍ୟ ସ୍ମରଣ ଅଭିପ୍ରାୟ ସମ୍ଭବତଃ କବି ସ୍କଟ୍ଙ୍କର କାବ୍ୟ ପ୍ରଭାବରୁ ଜନ୍ମ ନେଇଛି । ଏହି ଐତିହ୍ୟ-ଉପାସନା ପ୍ରବୃତ୍ତିର ସ୍ପଷ୍ଟ ଓ ସଚେତନ ପ୍ରତିଫଳନ ସତ୍ୟବାଦୀ କବି କୁଳଙ୍କ ଠାରେ ଦେଖାଦେଇଛି । କବି ନୀଳକଣ୍ଠ, ଗୋଦାବରୀଶ ମିଶ୍ର ଓ ଗୋପବନ୍ଧୁ ପ୍ରଭୃତି ସତ୍ୟବାଦୀ କବି-ଗଣ ଐତିହ୍ୟ ପ୍ରୀତି ପୋଷଣ କରି ଜାତୀୟ ଓ ଧାର୍ମିକ ସ୍ତରରେ ପୁନରଭ୍ୟୁତ୍ଥାନ-ଆଭିମୁଖ୍ୟ ( Revivalist ) ର ପ୍ରଶସ୍ତ ସଂଗଠନ ଲାଗି ବିଶେଷ ଯତ୍ନ କରିଛନ୍ତି ।

୮. ଅନୁବାଦ ଜରିଆରେ ପାଶ୍ଚାତ୍ୟ କାବ୍ୟ-କବିତାର ସଂକଳନ ହେତୁ କାବ୍ୟ-ଭୂମିର ବସ୍ତୁତ ଓ ଧର୍ମର ବୈଚିତ୍ର୍ୟ ପ୍ରତି ସଚେତନତା ଓଡ଼ିଆ କବିଙ୍କ ଠାରେ କିଞ୍ଚିତ୍ ପ୍ରକାଶ ପାଇଥିଲା । କେତେ କେତେ ଭାବ ରାଜ୍ୟରେ ଥିବା ଏକ ଦେଶ ଦର୍ଶିତା ଭାଙ୍ଗି, ନୂତନ ଉପାଦାନରେ ଆପଣା ସୃଷ୍ଟିକି ପୁଷ୍ଟ କରିବା ଅଭିପ୍ରାୟରେ ବିଦେଶୀ କବିତାର ଓଡ଼ିଆ ଅନୁବାଦ ଆଡ଼କୁ ମନ ବଳାଇଥିଲେ । ଅଜୟ ଚନ୍ଦ୍ର ଦାସଙ୍କର ଶ୍ୱେତ ଦ୍ୱୀପ ବୀଣା, ଶେଷ ବନ୍ଦୀ ଭାରତୀ ( Lay of the Last Ministrel, scot ଙ୍କ କାବ୍ୟର ଅନୁବାଦ ), ଗୋଦାବରୀଶ ମିଶ୍ରଙ୍କ 'ଚୟନିକା' ସଂକଳନ ଅନ୍ତର୍ଗତ ବହୁ କବିତା, ନୀଳକଣ୍ଠଙ୍କ ଦୁଇଟି କାବ୍ୟ, ଏପରିକି ସାମ୍ପ୍ରତିକ କାଳରେ କବି ମାନଙ୍କ ଦ୍ୱାରା ମାୟୋକୋଭସ୍କି, ଲଇକା ପ୍ରଭୃତି କବିଂକର କବିତାର ଅନୁବାଦ ଅନ୍ତରାଳରେ ଏହି ଦୃଷ୍ଟିକୋଣର ସନ୍ଧାନ ମିଳିଥାଏ । କେତେକ କବି ମଧ୍ୟ ସଫଳ ଅନୁହରଣ ମାଧ୍ୟମରେ ପାଶ୍ଚାତ୍ୟ ପ୍ରଭାବକୁ ଓଡ଼ିଆ କାବ୍ୟ-ଜଗତରେ ସଂକ୍ରମିତ କରାଇବାରେ ସମର୍ଥ ହୋଇଛନ୍ତି ରାମ ଶଂକର ରାୟଂକର 'ପ୍ରେମତରୀ ଗାଥା' ( ୧୯୬୮ ) ରେ ତିନୋଟି କୃତି ଯଥା ସେକ୍ସ-ପିୟରଂକ As you Like it, ଟେନିସନ୍ଂକ Enocharden ଏବଂ ଏବଂ ଗୋଲ୍ଡସ୍ମିଥ୍ଂକର Edwin and Angelina କାବ୍ୟ-ନାଟକର ଅନୁସରଣ ଘଟିଛି, ଚନ୍ଦ୍ରଶେଖର ମିଶ୍ରଂକର ସରୁ ସୁନ୍ଦରୀ (୧୯୫୮) ରେ କବି ସ୍କଟ୍ଂକର Lady of the Lake କାବ୍ୟର ଦେଶୀୟ ଅନୁସରଣ ସାଧିତ ହୋଇଛି । ପାଶ୍ଚାତ୍ୟ କଥାବସ୍ତୁର ଅନୁସରଣ ଓ ଦେଶୀୟ ପରିବେଶରେ ତାହାର ସମୀକରଣ ରାଧାନାଥଂକ କାବ୍ୟରେ କେତେ ଦୂର ସାଫଲ୍ୟ ଅର୍ଜନ କରିଛି, ତାହା ସୁବିଦିତ । ଆହୃତ ଉପାଦାନକୁ ଦେଶୀୟ ବିଶ୍ୱାସ ଅନୁକୂଳ କରି ପରିବେଷଣ କରିବାର କାବ୍ୟିକ ଦକ୍ଷତା ରାଧାନାଥଂକ ଠାରେ ଶିଳ୍ପୋତ୍କର୍ଷ ଲାଭ କରିଥିବା, ଆମେ ମନେ କରିଥାଉ । ଆମ କାବ୍ୟ-ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ ପରିପୁଷ୍ଟିର ଏହା ଏକ ସ୍ମରଣୀୟ ଦୃଷ୍ଟାନ୍ତ ନୁହେଁ କି ?

୯. ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟରେ ବିୟୋଗାନ୍ତକ କଥାନକର ସମାବେଶ ପାଇଁ ଆମ କବି-ଗଣ ପାଶ୍ଚାତ୍ୟ ସାହିତ୍ୟର

ନାନା ଉପାଦାନ ଆହରଣ କରିଛନ୍ତି । ରାଧାନାଥଙ୍କ କାବ୍ୟରେ ଟ୍ରାଜେଡ଼ି କାବ୍ୟ-କଳାର ପ୍ରୟୋଗ ଘଟିଛି, ତାଙ୍କ କାବ୍ୟରେ ଟ୍ରାଜିକ ବେଦନାବୋଧର ଯେଉଁ ସଙ୍କେତ ମିଳେ ତାହା ପାଶ୍ଚାତ୍ୟ କ୍ଲାସିକାଲ ଟ୍ରାଜେଡ଼ି ଅର୍ଥାତ ଆରିଷ୍ଟୋଟେଲୀୟ ଟ୍ରାଜେଡ଼ିର ଶିଳ୍ପଧର୍ମ ରକ୍ଷା କରିନାହିଁ । ବସ୍ତୁର ବର୍ଣ୍ଣନା, ଲିରିକାଲ ଅଭିବ୍ୟକ୍ତି, ଭୌଗୋଳିକ ପ୍ରକୃତିର ରୂପାୟନ, ଇନ୍ଦ୍ରିୟ-ଭୁକ୍ ଇଚ୍ଛାର ବିଳାସ, ଏବଂ ଚରିତ୍ରଚିତ୍ରଣ ଓ ଭାବ ପ୍ରକାଶରେ ଆବେଗ ପ୍ରତି ଆନୁଗତ୍ୟ ବୋଧ ଆମ୍ଭ ଦୃଷ୍ଟିରେ ଗୀତିତା ହେତୁ ରାଧାନାଥଙ୍କ କାବ୍ୟ ଗୁଡ଼ିକୁ Romantic Tragedy ପର୍ଯ୍ୟାୟଭୁକ୍ତ କରାଯାଇ ପାରେ । ସେକ୍ସପିୟରୀୟାନ ଟ୍ରାଜେଡ଼ିର ଶିଳ୍ପଧର୍ମ ଏଗୁଡ଼ିକରେ ସ୍ପଷ୍ଟ ବାରିହୁଏ । ନନ୍ଦକିଶୋରଙ୍କ ଶର୍ମିଷ୍ଠା କାବ୍ୟରେ ରୋମାଣ୍ଟିକ ଟ୍ରାଜେଡିର ପ୍ରତିବିମ୍ବନ ଲକ୍ଷିତ ହୁଏ । ପାଶ୍ଚାତ୍ୟ-ସାହିତ୍ୟ ପ୍ରଭାବରୁ ଟ୍ରାଜେଡ଼ି କାବ୍ୟ-ରୀତିର ଅନୁସରଣ ରାଧାନାଥଙ୍କ କାଳରୁ ଆମ କାବ୍ୟ-ସାହିତ୍ୟରେ ପ୍ରବେଶ କରିଥିଲ; ଭାରତୀୟ ଅଳଙ୍କାର ଶାସ୍ତ୍ରରେ ଏହି କାବ୍ୟ-ପ୍ରକରଣ ନିଷିଦ୍ଧ ଥିବା ସତ୍ତ୍ୱେ ଏହା କ୍ରମଶଃ ଆମ ସାହିତ୍ୟରେ ସ୍ୱୀକୃତି ଅର୍ଜନ କରିଥିଲା ।

ରାଧାନାଥଙ୍କ ମହାଯାତ୍ରାଠାରୁ ନୀଳକଣ୍ଠଙ୍କର 'ଖାରବେଳ' ପର୍ଯ୍ୟନ୍ତ କେତେକ କାବ୍ୟରେ ପାଶ୍ଚାତ୍ତ୍ୟ ଏପିକ୍ କାବ୍ୟ-କଳାର ଆଦର୍ଶ ଅନୁସୃତ ହୋଇଥିବା ଜଣାଯାଏ । ପାଶ୍ଚାତ୍ୟ ପ୍ରେରଣାରୁ Literary Epic ବା Epic of Art ର ପ୍ରବର୍ତ୍ତକ ରୂପେ ରାଧାନାଥଙ୍କୁ ମାନ୍ୟତା ଦିଆଯାଇଥାଏ। ମାହଯାତ୍ରା ବ୍ୟତୀତ, ମଣିଚରଣ ମହାପାତ୍ରଙ୍କ ସୁରଲକ୍ଷ୍ମୀ, ଚିନ୍ତାମଣିଙ୍କର ବନ୍ଦମାହାତ୍ମ୍ୟ, ନୀଳକଣ୍ଠଙ୍କର ଖାରବେଳ, କୋଣାର୍କେ ଇତ୍ୟାଦି କାବ୍ୟ-କୃତି ସାହିତ୍ୟକ ବା ରୋମାଣ୍ଟିକ ଏପିକ ଆଦର୍ଶର ସୃଷ୍ଟି ରୂପେ ପ୍ରତିପାତ ହୁଅନ୍ତି ।

ପାଟାୟାର ପରିକଳ୍ପନାରେ ମଧ୍ୟ ଆଧୁନିକ ଓଡ଼ିଆ କାବ୍ୟ-ସାହିତ୍ୟ, ପାଶ୍ଚାତ୍ୟ ସାହିତ୍ୟରୁ ଆଙ୍ଗିକ ଏବଂ କଳା-ବୋଧ ଆହରଣ କରିଥିବା ମନେହୁଏ ।

୧୦. ସବୁଜ କବିତାରୁ ଓଡ଼ିଆ କବିତାର ବିଗବଳୟ ସଂପ୍ରସାରିତ ହୋଇଛି । ସବୁଜ କବି-କୁଳ, ସ୍ୱପ୍ନ, କଳ୍ପନା, ଆବେଗ ପ୍ରବଣତାକୁ ମୂଳକରି ଆତ୍ମପ୍ରକାଶ ଲୋଡ଼ିଛନ୍ତି । ଏହି ଆଭିମୁଖ୍ୟ ଅନ୍ତରାଳରେ ରୋମାଣ୍ଟିକ କାବ୍ୟ-ବୋଧର ପ୍ରଭାବ ନିହିତ । ସବୁଜ କବିଙ୍କ କାବ୍ୟ-ଚେତନାରେ ପ୍ରତିଭାତ ମିଷ୍ଟିକ-ଦୃଷ୍ଟି ସ୍ୱପ୍ନ-ପ୍ରବଣ ଭାବୁକତା, ପରିଚ୍ଛନ୍ନ ସୌନ୍ଦର୍ଯ୍ୟବୋଧ, ସୁରୁଚି-କାରୁଣ୍ୟ, ପ୍ରକୃତି ପ୍ରିୟାପ୍ରତି ମମତାମୟ ଅନୁରକ୍ତି, ମାନସୀ-କନ୍ୟାଲାଗି Romantic agony — ଅତୃପ୍ତ ଆକୃତି; ଓଡ଼ିଆ କବିତାର ପ୍ରତିଷ୍ଠିତ ପରମ୍ପରାରେ ନୂତନ ଆଲୋଡ଼ନ ସୃଷ୍ଟି କରିଛି ନିଶ୍ଚୟ ! କିନ୍ତୁ ଏହି କବି-ପ୍ରବୃତ୍ତିର ପରିପାଳନ ମୂଳରେ ଅଛି ପାଶ୍ଚାତ୍ୟ ଓ ପଡ଼ୋଶୀ ପ୍ରଭାବ । କବି ବୈକୁଣ୍ଠନାଥ ନିଜେ ସ୍ୱୀକାର କରିଛନ୍ତି "ଅନ୍ୟାନ୍ୟ ନୋବେଲ ବିଜେତାଂକ ମଧ୍ୟରେ ମୋତେ ଆଇରିଷ ଲେଖକ କବି W. B. yeatsଙ୍କ ଲେଖା ବହୁ ପରିମାଣରେ ଅନୁପ୍ରାଣିତ କରିଥିଲା । ବ୍ରିଟିଶ କବିମାନଂକ ମଧ୍ୟରେ Words worth, ସେଲିଙ୍କର ପ୍ରଭାବ ମୁଁ ବହୁପରିମାଣରେ ଅନୁଭବ କରିଅଛି । ଆମ ସବୁଜ ଗୋଷ୍ଠୀ ବିଶେଷତଃ ଅନ୍ନଦା, ଓ୍ୱାଡସଓ୍ୱାର୍ଥ ଓ ଭକ୍ତକବି ମଧୁସୂଦନଙ୍କୁ ଶ୍ରେଷ୍ଠ କବି ନ କହିଲେ ସୁଦ୍ଧା, ସେ ଦୁହେଁ ମୋ ଜୀବନର କବି-ଗୁରୁ ।" ( ବୈକୁଣ୍ଠନାଥ ଗ୍ରନ୍ଥାବଳୀ— ପ୍ରଥମଭାଗ — ଜୀବନୀ ଓ କୃତି ପୃଃ ୩୬ । )

ସବୁଜ କବିଗଣ ରୋମାଣ୍ଟିକ, ମିଷ୍ଟିକ ଓ ପ୍ରୋଗ୍ରେସିଭ ଆଭିମୁଖ୍ୟକୁ ଆପଣା କବିତାର ଅନୁପ୍ରେରକ ଶକ୍ତି ରୂପେ ମାନି ନେଇଥିଲେ । ଏଥିଲାଗି ସେମାନେ ବିଶ୍ୱ-ଭୂମିରୁ ପ୍ରେରଣା ସଂଗ୍ରହ କରିଥିଲେ । କବି କଣ୍ଠରୁ ଉଚ୍ଚାରିତ ହୋଇଥିଲା — 'ଡାକେ ମୋତେ ବିଶ୍ୱର ଆକାଶ । ଡାକେ ମୋତେ ସ୍ୱଦେଶର ପ୍ରତି ଧୂଳିକଣା, ପୃଥିବୀର ପ୍ରତି ଗିରିନଦୀ, ସୁଦୂର ଗଗନ ପଥେ ରବି ଚନ୍ଦ୍ର ନୀହାରିକା, ତାରକା ରୁଚିର ।' (ଅନ୍ନଦାଶଂକରେ—କମଳ ବିଳାସୀର ବିଦାୟ) ଚେତନାର ସ୍ଫୁଲିଙ୍ଗଟିଏ ପାଇବା ଲାଗି ବିଶ୍ୱ ଆଡ଼କୁ ସେମାନଂକର ଧ୍ୟାନ, ସୃଷ୍ଟି ପ୍ରବଣତାର ଭାବ-ସମୁଦ୍ରରେ ସେମାନଙ୍କର ଅବଗାହନ— "ସୃଜନ ମୋହ ମାଦକ ପରି, ଉଦିତ ମୋର ଚେତନା ଭରି, ଦେଇଛନ୍ତି

ସବୁ ଭୁଲଇ” — ହେଉଛି ତାଙ୍କର ଉଚ୍ଚାରଣ । ଏହା ରୋମାଣ୍ଟିକ କବି-ବାଣୀର ବିଶୁଦ୍ଧ ପ୍ରତିଧ୍ୱନି । ପାଶ୍ଚାତ୍ୟ ରୋମାଣ୍ଟିକ କାବ୍ୟ-ବୋଧର ପ୍ରତିଧ୍ୱନି ହିଁ ଏହା ନିର୍ବିକାରଭାବେ ଉଚ୍ଚାରଣ କରନ୍ତି ।

ବୈକୁଣ୍ଠନାଥଙ୍କ କବିତାରେ ପ୍ରତିଧ୍ୱନିତ ମିଷ୍ଟିକ ଚେତନାର ଚରମପନ୍ଥୀ ସ୍ୱର ‘ଯାତ୍ରା ସଙ୍ଗୀତ’ କବିତାରୁ ଶୁଣାଯାଏ । ଅବଶ୍ୟ ପଥଭ୍ରଷ୍ଟା, ପାନ୍ଥଶାଳା, କାରାବାସୀ କବିର ସ୍ୱପ୍ନ, ଦେବଦୂତ ପ୍ରଭୃତି କବିତା ରେ ମର୍ତ୍ତ୍ୟକୁ କାରାବାସ, ଏପରିକି ପ୍ରବାସ ଭାବେ ମନେ କରାଯାଇ ଆଉ ଏକ ଶାଶ୍ୱତ ଜଗତ ଲାଗି ଆକର୍ଷଣ ପ୍ରକାଶ ପାଇଛି । ଏପରି ମନୋଭାବ ଅନ୍ତରାଳରେ ଇଂରେଜୀ କବି Leigh Hunt, Cardinal Newman ଏବଂ ଭାରତୀୟ କବି ଚଣ୍ଡୀଦାସ, ବିଦ୍ୟାପତି ଇତ୍ୟାଦିଙ୍କର ପ୍ରଭାବ ପ୍ରଚ୍ଛନ୍ନ । ପଦାନୁକରଣ କିଂବା ପଙ୍କ୍ତି ପଙ୍କ୍ତି ମଧ୍ୟରେ ସାଦୃଶ୍ୟର ସନ୍ଧାନ କଲେ—ବୈକୁଣ୍ଠ ନାଥଙ୍କ କବିତାରୁ ଇଂରେଜୀ କବି ମାନଙ୍କର ପଦଚିହ୍ନ ମିଳେ ନାହିଁ । କିନ୍ତୁ ଚେତନାର ସାମ୍ୟ ହିଁ ମିଳିଥାଏ । ବୈକୁଣ୍ଠନାଥ ଏକା ପ୍ରକାରେ କବି-ଜୀବନ ବିତେଇ ନାହାନ୍ତି— ରୋମାଣ୍ଟିକ ଶିଳ୍ପ ପ୍ରବର୍ତ୍ତକର ପରିଣତ ରୂପ — ମିଷ୍ଟିକ୍ ଅବବୋଧ କ୍ରମଶଃ ବାସ୍ତବବାଦୀ ଓ ପ୍ରୋଗ୍ରେସିଭ କବି-ଭାବନାକୁ ବରଣ କରିନେଇଛି । ଉଷା, ହରିଜନ, ଉପମା ବିରୋଧ, ମେହେନ୍ତର, ମୂକ ଭଗବାନ, ଅଗଷ୍ଟ ବିପ୍ଳବ ପ୍ରଭୃତି ବହୁ କବିତାରେ ପ୍ରଗତିବାଦୀ ଚିନ୍ତନର ଛାୟାପାତ ଆମେ ଲକ୍ଷ କରୁ”— ଏହା ରୁଷୀୟ ବିପ୍ଳବ ପରବର୍ତ୍ତୀ ପୃଥିବୀର ପ୍ରଭାବର ପରିଣାମ । ଏହି ପରିଣାମ ମଧ୍ୟ କବି କାଳନ୍ଦୀ ଚରଣଙ୍କ କବି-ଚିତ୍ତକୁ ସ୍ପର୍ଶ କରିଛି । କାଳନ୍ଦୀ ଚରଣଙ୍କ କାବ୍ୟ-ଚେତନା, ପ୍ରାଥମିକ ଅବସ୍ଥାରେ ଓ୍ୱାର୍ଡ଼ସଓ୍ୱାର୍ଥ, କୀଟସ୍, ସେଲି ପ୍ରଭୃତି ଇଂରାଜୀ ରୋମାଣ୍ଟିକ କବିମାନଙ୍କ ଭାବ-ନିକେତନରେ ଥାଇ, କ୍ଷୁଦ୍ରଗ୍ରାସ, ମଧୁ ବିବାହ, ଫଗୁଣ ବଂଶୀ (ଜୋତ୍ସ୍ନା), ପ୍ରସାଧନ, ପୌଷ ମଳୟ ପ୍ରଭୃତି କବିତାରେ ଯେଉଁ ସବୁଜ-ରୋମାଣ୍ଟିସିଜମର ସ୍ୱର ତୋଳିଥିଲା, ତାହାର ବିବର୍ତ୍ତିତ ଅଭିବ୍ୟକ୍ତି ମାର୍କସୀୟ-ସାମ୍ୟବାଦୀ ଚେତନାର ପ୍ରଭାବରେ ଭିନ୍ନ ଆକାର ଦେଇଥିଲା । କବିଙ୍କର ‘କ୍ଷଣିକ ସତ୍ୟ’, ତୃଣଟିଏ ଲୋଡ଼ା କବିତା ସଂକଳନରେ ଏହାର ପରିଚୟ

ପ୍ରଚ୍ଛନ୍ନ । ଆଗାମୀ, କଏ ଶଳା ସଇତାନ, ଭକ୍ତ ଓ ଗୁରୁକ, ଦେବତା ଓ ମଣିଷ, ଜୟ ଭଗବାନ ପ୍ରଭୃତ କବତାରେ ମାର୍କସବାଦୀ ପ୍ରଗତ ଚେତନାର ପ୍ରତଧ୍ୱନ ଶୁଣାଯାଏ । ସାମ୍ୟବାଦୀ ଅଙ୍ଗୀକାର ଯେ ତାଙ୍କ କାବ୍ୟ-ଚେତନାକୁ କପର ବବର୍ତ୍ତିତ କରଛି, ତାହାର ଏକ ଅଭବ୍ୟକ୍ତ ହେଉଛି— "କବତା ଗଢେ଼ ଏକ ବରାଟ ସମାଜର / ସବୁର ପାଇଁ ଯହିଁ ବାଖରେ ହେଲେ ଘର ସକଳେ ଲଭବାକୁ ମୁଠାଏ ଦୁଧଭାତ / ଯୋଗ୍ୟ ଯେତେ ଯହିଁ ବାଳକ ବାଳକାତ ଦୁଇଟା ଲୁଗାଜାମା ସବୁର ପାଇଁ ମିଳେ / ପଢିବା ପାଇଁ ବାଧା କାହାର ନାହିଁ ତଳେ ବେକାର ରହବାକୁ ନାହିଁ ଅଧିକାର / ସବୁର ପାଇଁ କାମ ଯୋଗାଏ ସରକାର କହବା ପାଇଁ କଥା ସବୁର ଦାବୀ ଅଛି / ମୁଁ ସେଇ ସମାଜର କବତା ବସେ ରଚ । ( ଆଗାମୀ - ଚୁଲିଟିଏ ଲୋଡ଼ା ପୃ ୧୧୯ )

୧୧. ସାମ୍ୟବାଦୀ ସମାଜ-ଦର୍ଶନର ପ୍ରଭାବରେ କବ 'ସଚି-ରାଉତରାୟ ଓ କବ ଅନନ୍ତ ପଟ୍ଟନାୟକଙ୍କର କାବ୍ୟ-ଜଗତ ଅଧିକ ପରମାଣରେ ପୁଷ୍ଟ ହୋଇଛନ୍ତି ଏବଂ ସେମାନେ କବ ଜୀବନର ସମସ୍ତ ବୈପ୍ଳବକ ପ୍ରଗତବାଦୀ ଚେତନାର ପରପାଳନରେ ବ୍ୟସ୍ତ କରି-ଛନ୍ତି । ଏମାନଙ୍କ ଚନ୍ତା ପରସର ଭତରକୁ ଯୁଦ୍ଧୋତ୍ତର ଇଉରୋପର କବମାନଙ୍କ ବୈପ୍ଳବକ ଚୈତର୍ଯ୍ୟର ଶବ୍ଦ-ତରଙ୍ଗ ପ୍ରବେଶ କରଛି । ଏମାନେ ଯୁଦ୍ଧ ପରବର୍ତ୍ତୀ ସମାଜର ଅବକ୍ଷୟୀ ମୂଲ୍ୟକୁ ଅତକ୍ରମ କରଯିବା ପାଇଁ, ମଣିଷକୁ ହତାଶା ଓ ଅବଶ୍ୱାସରୁ ରକ୍ଷା କରବାକୁ, ସାମ୍ରାଜ୍ୟ-ବାଦୀ ଅତ୍ୟାଚାରରୁ ମାନବ-ସଭ୍ୟତାକୁ ମୁକ୍ତ କରବାକୁ ଯେଉଁ ଅଜେୟ ଅଭଯାନର ସ୍ୱାଗତକା ଗାନ କରଛନ୍ତି ତାହା ମୋଟା ମୋଟି ଫରାସୀ କବ ଲୁଇ ଆରଗୁଁ, ମାଲର୍ମେ, ଋଷିୟାର ମାୟାକୋଭସ୍କି, ଇଂରେଜୀ କବ ସ୍ପେଣ୍ଡର, ଅଡେନ, ଏବଂ ହ୍ୱିଟ ମ୍ୟାନ, ଇଲିୟଟ ପ୍ରଭୃତଙ୍କ ଚେତନାର ପ୍ରତଧ୍ୱନ କହଲେ ଚଳେ । କବ ସଚି ରାଉତରାୟଙ୍କ ଅଭଯାନ ( ୧୯୩୮ ) ସଙ୍କଳନସ୍ଥ ବଭିନ୍ନ କବତା ଯଥା-ଶ୍ରମିକ କବ, ସର୍ବହରା, ଷ୍ଟେନ୍, ବପ୍ଳବୀ ଜନ୍ମଦନେ, ନାଲ ନଭେମ୍ବର ଇତ୍ୟାଦର ବଷୟବସ୍ତୁ ଓ ଆଭମୁଖ୍ୟରେ ମାର୍କସବାଦୀ ଚେତନାର ସ୍ପଷ୍ଟ ରୂପ ବାର ହୁଏ । କବଙ୍କର ବାଜରାଉତ ( ୧୯୪୧ ) ଗର୍ଦ୍ଦ କବତାରେ ବପ୍ଳବର ସ୍ୱର ଶୁଣାଯାଉଥିଲେ ମଧ୍ୟ ଏହାର ଅନ୍ତର୍ଭୂମିରେ—ଅନ୍ଧାର, ଅତ୍ୟାଚାର

ଭିତରୁ ଆଶା, ଆଲୋକ ଓ ମୁକ୍ତି ଆଡ଼କୁ ଅବିନାଶୀ ମାନବ ଆତ୍ମାର ଉତ୍ତରଣକୁ ସ୍ବ ପ୍ରତୀକାତ୍ମକ ଭଙ୍ଗୀରେ ସୂଚାଇ ଦିଆଯାଇଥିବାର କବି ପ୍ରୟାସ ବିଦ୍ୟମାନ । ଅଭିଯାନର ଭୂମିକା କବି ରାଜତସସ୍ୱ ଘୋଷଣା କରିଥିଲେ—'ଏ ଲେଖକ ସମସ୍ତଙ୍କ ଅପେକ୍ଷା ବଡ଼ ବୋଲି ଭାବେ ମଣିଷକୁ । ସେ ମଣିଷ ଏକ ସ୍ୱାଧୀନ ସଚେତନ ଓ ମର୍ଯ୍ୟାଦାବନ୍ତ ବ୍ୟକ୍ତିତ୍ୱ ।' ମଣିଷକୁ ମୂଲ୍ୟ ଦେବାର ଅଭିପ୍ରାୟ ପରବର୍ତ୍ତୀ କାଳର କବିତାରେ ମଧ୍ୟ ପ୍ରତିଧ୍ୱନିତ । ମଣିଷ ପାଇଁ କବି ମନର ବୈପ୍ଲବିକ ମାନବବାଦୀ ଆଳାପର ଉଚ୍ଚାରଣ କବିଙ୍କ 'କବିତାର କବର' କବିତାରେ ଶୁଣାଯାଏ ଯାହାର ସ୍ୱର ସ ମ୍ୟ ମାଇକୋଭସ୍କିଙ୍କ ଉକ୍ତିରୁ ମିଳିପାରେ ।

କବି ଅନନ୍ତ ପଟ୍ଟନାୟକଙ୍କ କବି-ମାନସ, ଗାନ୍ଧୀବାଦୀ ଓ ମାର୍କସବାଦୀ ଚେତନାର ପ୍ରଭାବରେ ଗଠିତ । ରୋମାଣ୍ଟିକ ଚେତନା ସହିତ ପ୍ରଗତିବାଦୀ ଚେତନାର ସମ୍ମିଶ୍ରଣ ମଧ୍ୟ କେତେକ କ୍ଷେତ୍ରରେ ପରିଲକ୍ଷିତ । ତାଙ୍କ କବି ଆତ୍ମାର ଇସ୍ତାହାର ହେଉଛି—

'କାନ୍ଧର କୋଦାଳ ଆଜ ହାତର କହାଣରେ ମୋର/ହସର ହାତୁଡ଼ି ଆଜ ଦୈନ୍ୟର ଦାଆରେ ମୋ /ଲୌହର ଲେଖନୀ ଆଜ କୋଇଲାର ତୁଳୀରେ ମୋର । ନଭର ଗର୍ଭରେ ରୋଇ ଭୂମିର ଭ୍ରୂଣ ଝୁଲିଲି ମୁଁ ଝୁଲିଲି । ( ଝୁଲିଲି ମୁଁ ଝୁଲିଲି ) ଏଇ ସାମ୍ୟବାଦୀ ଚେତନାର ପ୍ରତିଧ୍ୱନି-କବିଙ୍କର ରକ୍ତଶିଖା, ଆମେ ମୂଳିଆର ଜାତି ଜାଗିବୁ, ପ୍ରଳୟ ଆବାହନ, ଏଇ ମଇଁ ଦିବସ, ଆରେ ଦୁର୍ଭାଗା ଦେଶ ଇତ୍ୟାଦି ବହୁ କବିତାରେ ଗୁଞ୍ଜରିତ । ସାମ୍ୟବାଦର ପ୍ରତୀକ ଭାବରେ କବି ବିଭିନ୍ନ କବିତାରେ ରକ୍ତ କଇଁ, ଲାଲ ସୂର୍ଯ୍ୟ, ରକ୍ତ ତାରକା ରକ୍ତ କରବୀ ଇତ୍ୟାଦି ଶବ୍ଦ-ଶବ୍ଦର ବ୍ୟବହାର କରିଛନ୍ତି ଯାହାକି ଲୁଇ ଆରଗଁଙ୍କ Red train ର ପ୍ରତୀକରୁ ଆହୃତ ହୋଇଥିବା ମନେହୁଏ । କବିଙ୍କର 'ମୁଁ ଅଛି,' 'ଫୁଟିବି ମୁଁ ଫୁଟିବି' ମୁଁ ଏଇ ଜନ୍ମିଲି ଆରେ' ଆଦି କବିତାରେ ପ୍ରଗତି-ବାଦୀ ଚେତନା—ବୈପ୍ଲବିକ ମାର୍କସବାଦର ପରୋକ୍ଷ ପଦକ୍ଷେପ ରୂପେ ପ୍ରାପ୍ତ ଧ୍ୱନିତ ହୋଇଛି । ଋଷ ବିପ୍ଳବ ଓ ଯୁଦ୍ଧୋତ୍ତର ପୃଥିବୀରୁ ପ୍ରେରଣା ନେଇ ଯେଉଁ ମାନେ ଉଣା ଅଧିକେ ଏଇ ସାମ୍ୟବାଦୀ ସ୍ୱର ସେମାନଙ୍କ

କବିତାରେ ଉଚ୍ଚାରଣ କରିଛନ୍ତି, ତାହାର ଫଳଶ୍ରୁତି ଯେ ଆମର ସାଂପ୍ରତିକ ସମାଜ ଭୋଗ କରୁନାହିଁ—ତାହା ନୁହେଁ ।

୧୨ ୧୯୩୯ ପରବର୍ତ୍ତୀ ଓଡ଼ିଆ କାବ୍ୟ ଧାରାରେ ଇମେଜିଷ୍ଟ କାବ୍ୟ ଆନ୍ଦୋଳନର ପ୍ରଭାବ ବ୍ୟାପକ ଭାବେ କବି ସଚ୍ଚି ରାଉତରାୟ, ବିନୋଦ ନାୟକ, କବି ଚିନ୍ତାମଣି, କବି ବୈଣୁଧର, କବି ଭରଦ୍ୱାଜ, ଗୁରୁ ମହାନ୍ତି, ରମାକାନ୍ତ ଓ ସୀତାକାନ୍ତ ସୌଭାଗ୍ୟ ମିଶ୍ର ସମେତ ଅନ୍ୟାନ୍ୟ ବହୁ କବିଙ୍କୁ ନାନା ମତେ ଅନୁପ୍ରାଣିତ କରିଛି । ଏହି ଇମେଜିଷ୍ଟ କାବ୍ୟଭଙ୍ଗୀକୁ ଓଡ଼ିଆ କବିକୁଳ ହ୍ୟୁମ,!ଏଜରା ପାଉଣ୍ଡ, ବଦଲେୟାର ଇତ୍ୟାଦିଙ୍କ ସୂତ୍ରରୁ ଗ୍ରହଣ କରି, ଚିତ୍ର କଳ୍ପର ବିନ୍ୟାସ ହିଁ କବିତାର ଶ୍ରେଷ୍ଠ ସାଧନ ବୋଲି ବିଚାରୁଛନ୍ତି ।

୧୩ କବି ଗୁରୁ ପ୍ରସାଦଙ୍କ 'କାଳ ପୁରୁଷ' ଏବଂ ଅନ୍ୟାନ୍ୟ କବିତାରେ ଟି ଏସ . ଇଲିୟଟ, ଡନ, ଓ ବଦ୍‌ଲେୟାର ପ୍ରଭୃତିଙ୍କର କାବ୍ୟ-ବୋଧ ଓ କାବ୍ୟ-ସୂତ୍ରର ପ୍ରଭାବକୁ ଆମେ ପ୍ରତ୍ୟକ୍ଷ କରିଥାଉ । ଏ କାଳର ଓଡ଼ିଆ କବିଙ୍କ କବିତାରେ ଇଲିୟଟଙ୍କ ପ୍ରଭାବ ପ୍ରବଳ । କବି ରମାକାନ୍ତଙ୍କ କବିତାରେ ଇଟିସ୍, ଡିଲାନ ଥମାସ, ଇଲିୟଟ ଏବଂ ଇଂଲଣ୍ଡ ମେଟା ଫିଜିକାଲ କବିଙ୍କର ପ୍ରଭାବକୁ ସତର୍କ ଅନୁଶୀଳନ ଫଳେ ଲକ୍ଷ କରିହୁଏ । ସୀତାକାନ୍ତଙ୍କ କାବ୍ୟ ଚେତନାରେ ଇଲିୟଟ, ପାଉଣ୍ଡ, କ୍ୟାମୁ, କାଫକାଙ୍କ ସମେତ ପରମ୍ପରାର ନବୀନ ସଂଯୋଗ-ସୂତ୍ର କଳନା କରାଯାଇ ପାରେ । ସୀତାକାନ୍ତଂକ କବିତାର ବିଶେଷତ୍ୱ ହେଉଛି ତାଂକ ଅଭିବ୍ୟକ୍ତି – ମିଥ୍ ଓ ଆର୍କିଟାଇପର ବିପୁଳ ପ୍ରୟୋଗ । ସାଂପ୍ରତିକ କବି-ମାନସ, ଓଡ଼ିଶାର ଭୌଗଳିକ ଆୟତନ ଭିତରେ ଆବଦ୍ଧ ନୁହେଁ, ବିଶ୍ୱର ପ୍ରତିଟି ସ୍ପନ୍ଦନର ସ୍ପର୍ଶ, ପ୍ରତିଟି ପ୍ରକରଣ ବା ଟେକ୍‌ନିକର ଅନୁସରଣରେ ଏହା ତତ୍ପର । ମନେ ହୁଏ ଓଡ଼ିଆ କବିତାର ଭୂମିକାରେ ବିଶ୍ୱ କବିତାକୁ ଏବଂ ବିଶ୍ୱ-କବିତାର ଭୂମିକାରେ ଓଡ଼ିଆ କବିତାକୁ ଚିହ୍ନିବା ଆଦୌ କଷ୍ଟକର ନୁହେଁ । ଓଡ଼ିଆ କବିତା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ଥିବା ବ୍ୟବଧାନକୁ ଘୁଞ୍ଚେଇ ଦେଇଛି । ପାଶ୍ଚାତ୍ୟ ପ୍ରଭାବରୁ ଓଡ଼ିଆ କବିତାର ଆଂଗିକ-ସମୃଦ୍ଧି ଘଟିଛି-ସନେଟ, ଓଡ

ଏଲାଜ, ବାଲାଡ, ଏପିକ ପ୍ରଭୃତି କାବ୍ୟଗୀତରୁ ଇମେଜିଷ୍ଟ କାବ୍ୟ-ଗୀତ ପର୍ଯ୍ୟନ୍ତ ନାନା-ବିଭବରେ ଏହା ମଣ୍ଡିତ ହୋଇଛି । ପାଶ୍ଚାତ୍ୟ ପ୍ରଭାବ ବସ୍ତୁତଃ ଆମ କାବ୍ୟ-ସାହିତ୍ୟର ଦିଗ୍‌ବଳୟକୁ ପ୍ରସାରିତ କରିଛି, ନବ ନବ ଚେତନା ଓ ପରିପାଟୀରେ ପରିପୁଷ୍ଟ କରିଛି । ପ୍ରଭାବର ପରିଣାମ ନିନ୍ଦନୀୟ ନ ହୋଇ, ମର୍ଯ୍ୟାଦାର ମୂଲ୍ୟ ପାଇଛି । ସାହିତ୍ୟ-ସ୍ରୋତ କେତେ ତଟ ସୃଷ୍ଟି କରିଛି, ନୂଆ ଜନପଦ ସୃଷ୍ଟିର କ୍ଷେତ୍ର ପ୍ରସ୍ତୁତ କରିଛି, ତାହାର କଳନା କଣ ସୀମିତ ବନ୍ଧନରେ ସମ୍ଭବ ?

---

**ଡଃ କ୍ଷେତ୍ରବାସୀ ନାୟକ**

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ରେଭେନ୍‌ସା କଲେଜ
କଟକ—୩।

# ଆଧୁନିକ ଓଡିଆ କାବ୍ୟ ସାହିତ୍ୟରେ ପ୍ରାଚୀନ ସାଂସ୍କୃତିକ ଐତିହ୍ୟର ପ୍ରଭାବ

ବ୍ୟାପକ ଅର୍ଥରେ 'କାବ୍ୟ' ଶବ୍ଦ ସବୁବିଧ ସାହିତ୍ୟ କୃତିକୁ ବୁଝାଉଥିଲେ ହେଁ ଏଠାରେ ମୁଁ ଏହାକୁ ପ୍ରଚଳିତ ଅର୍ଥରେ—ଆଖ୍ୟାନ ଅଥବା ବର୍ଣ୍ଣନା ଧର୍ମୀ ଛନ୍ଦୋବଦ୍ଧ ପଦ୍ୟ ରଚନା—ଅର୍ଥରେ ଗ୍ରହଣ କରିଛି ଓ ବିଗତ ଶତାବ୍ଦୀର ଶେଷ ପାଦରୁ ପ୍ରବର୍ତ୍ତିତ, ପ୍ରାଚୀନ ପରମ୍ପରା ବିମୁକ୍ତ କାବ୍ୟ ମାନଙ୍କୁ ହିଁ ଆଧୁନିକ କାବ୍ୟ ଭାବେ ଗ୍ରହଣ କରିଅଛି । ଏହି କାବ୍ୟ ପ୍ରଧାନ ଯୁଗର ଗୀତି କବିତା ବା ଗୀତି କାବ୍ୟକୁ ଆଲୋଚନା ପରିସର ମଧ୍ୟକୁ ଆଣିନାହିଁ । ଶୀର୍ଷକର ଶେଷାଂଶ ସାଂସ୍କୃତିକ ଐତିହ୍ୟକୁ ମୁଁ ହିନ୍ଦୁ ଧର୍ମାନୁମୋଦିତ ରୀତି ନୀତି, ବିଚାର-ଧାରା, ମୂଲ୍ୟବୋଧ, ବିଶ୍ୱାସ ଓ ଏ ଦେଶର ପାରମ୍ପରିକ କଳାକୃତି ଅର୍ଥରେ ହିଁ ଗ୍ରହଣ କରିଅଛି ।

କବିବର ରାଧାନାଥ ହିଁ ଯଥାର୍ଥତଃ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଜନକ । କାବ୍ୟରେ ଗତାନୁଗତିକ ଭାବେ ନିୟୋଜିତ ହୋଇ ଆସୁଥିବା ପୌରାଣିକତାକୁ ପରିହାର କରି ନୂତନ କଥାବସ୍ତୁ ପରି-କଳ୍ପନା କ୍ରମେ ସେ ତାହାକୁ କାବ୍ୟରେ ନିୟୋଜିତ କରି ଅଛନ୍ତି । ଏତଦ୍ ବ୍ୟତୀତ ଓଡ଼ିଆ କାବ୍ୟରେ ଉପେକ୍ଷିତ ଓଡ଼ିଶାର ଆଞ୍ଚଳିକ ପ୍ରକୃତି ଓ ତାହାଙ୍କ ସମକାଳୀନ କେତୋଟି ଗୁରୁତ୍ୱପୂର୍ଣ୍ଣ ସାମାଜିକ ସମସ୍ୟାକୁ ମଧ୍ୟ ସେ ତାହାଙ୍କ କାବ୍ୟର ଉପାଦାନ ଭାବେ ନିର୍ବାଚନ କରିଛନ୍ତି । କାବ୍ୟର ଅଙ୍ଗସଜ୍ଜା, ଛନ୍ଦ ଓ ଶବ୍ଦ ଯୋଜନା କ୍ଷେତ୍ରରେ ମଧ୍ୟ ତାହାଙ୍କ କୃତିତ୍ୱ ଥିଲା ମହତ୍ତ୍ୱପୂର୍ଣ୍ଣ । କହିବା ଅନାବଶ୍ୟକ, ଏହା ଓଡ଼ିଆ କାବ୍ୟ ରଚନା କ୍ଷେତ୍ରରେ ନୂତନ ପରମ୍ପରା ପ୍ରତିଷ୍ଠା କରିବା ସଙ୍ଗେ

ଯୁଗାନ୍ତର ସମ୍ପାଦନ କରିଛି । ରାଧାନାଥ ପ୍ରାଚୀନ ପରମ୍ପରାକୁ ଭାଙ୍ଗିବାକୁ ଚେଷ୍ଟା କରିଛନ୍ତି । ପ୍ରାଚୀନ ସାଂସ୍କୃତିକ ଐତିହ୍ୟକୁ ଲଙ୍ଘନ କରିବାକୁ ଯାଇଁଛନ୍ତି । ମାତ୍ର ସଫଳ ହୋଇଛନ୍ତି କି ? ତାଙ୍କ ସୃଷ୍ଟ କେତେକ ଚରିତ୍ର ସାମାଜିକ ରୀତିନୀତିର ବିରୁଦ୍ଧାଚରଣ କରିଛନ୍ତି । ଉଦାହରଣ ସ୍ୱରୂପ ତାହାଙ୍କ ନନ୍ଦିକା ଏକ ବିପ୍ଳବିନୀ । ଆପଣାର ପ୍ରେମ ପାଇଁ ସେ ଦେଶ-ଦ୍ରୋହୀ, ପିତୃଦ୍ରୋହୀ ଓ ଧର୍ମଦ୍ରୋହୀ ହେବାକୁ ପଶ୍ଚାତପଦ୍ ହୋଇନାହିଁ । ସେଥିପାଇଁ କବି ତା ମୁଖରେ କୁହାଇଛନ୍ତି—

"ସୁତାରେ ପିତାଙ୍କ ପୂର୍ଣ୍ଣ ଅଧିକାର
ଭଣେ ଯେଉଁ ଶାସ୍ତ୍ର ତାହାକୁ ଯୁହାର ।"

ମାତ୍ର ରାଧାନାଥଙ୍କ କାବ୍ୟରେ ସର୍ବତ୍ର ଆମେ ଭାଗ୍ୟ, କର୍ମଫଳ, ଦୈବୀ ପ୍ରଭାବ, ଦେବଦେବୀଙ୍କ ସ୍ୱପ୍ନାଦେଶ ପ୍ରଭୃତିର ନିଦର୍ଶନ ଦେଖିବାକୁ ପାଇଥାଉ । ନିୟତିର ପ୍ରଭାବ ଯେ ଅଲଂଘନୀୟ ଏହାହିଁ ଥିଲା ରାଧାନାଥଙ୍କ ମର୍ମବାଣୀ—ତାହାଙ୍କ ଭାଷାରେ

"ଶକ୍ତିନାହିଁ ବିଧି କାହାରି ଜଗତେ
ନିୟତିକୁ ଦେବ ନିଜ ଇଚ୍ଛା ମତେ ।"

ରାଧାନାଥଙ୍କ କାବ୍ୟର ଅଙ୍ଗସଜ୍ଜା ଓ ଆଦର୍ଶ ତାହାଙ୍କ ସମକାଳୀନ ଓ ପରବର୍ତ୍ତୀ ବହୁ କବିଙ୍କୁ ଯେ ବିପୁଳ ପରିମାଣରେ ପ୍ରଭାବିତ କରିଥିଲା ଏହା କହିବା ବାହୁଲ୍ୟ ମାତ୍ର । ବିଗତ ଏକ ଶତାବ୍ଦୀ (୧୮୭୦-୧୯୭୦) ମଧ୍ୟରେ ରାଧାନାଥଙ୍କ କାବ୍ୟ ରୀତିର ଆଦର୍ଶରେ ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, ଚିନ୍ତାମଣି, ଗୋପବନ୍ଧୁ, ନୀଳକଣ୍ଠ, ବଳଭଦ୍ରଦେବ, ବ୍ରଜରାଜ ସିଂହ, ଅପର୍ଣ୍ଣା ଦେବୀ, ଚନ୍ଦ୍ରମଣି ଦାସ, ମାୟାଧର ମାନସିଂହ, ଜୟକୃଷ୍ଣ ମିଶ୍ର, ଜୟକୃଷ୍ଣ ପଟ୍ଟନାୟକ, କୁଞ୍ଜ ବିହାରୀ ଦାଶ, ଖଗେଶ୍ୱର ସେଠ, ଚନ୍ଦ୍ରଶେଖର ପଟ୍ଟନାୟକ ପ୍ରଭୃତି କବିଗଣ ଓଡ଼ିଆରେ ବହୁ କାବ୍ୟ ରଚନା କରି ଯାଇଛନ୍ତି ।

କଥାବସ୍ତୁ ଦୃଷ୍ଟିରୁ ଏହି କାବ୍ୟମାନଙ୍କୁ ପୌରାଣିକ, କିମ୍ବଦନ୍ତୀ ଆଧାରିତ, ଐତିହାସିକ, କାଳ୍ପନିକ, ସାମାଜିକ ବା ସାଂପ୍ରତିକ ଘଟଣା-ମୂଳକ, ଆଞ୍ଚଳିକ ପ୍ରକୃତିବର୍ଣ୍ଣନା ମୂଳକ, ହାସ୍ୟ ବା ବ୍ୟଙ୍ଗଧର୍ମୀ, ଅନୁଦିତ ଅଥବା ବିଦେଶୀ କଥାବସ୍ତୁ ଆଧାରିତ ଭେଦରେ ଆଠଗୋଟି ଭାଗରେ ବିଭକ୍ତ କରାଯାଇ ପାରେ । ସୁବିସ୍ତୃତ ନହେଲେହେଁ ଏଠାରେ ତାହାର ସଂକ୍ଷିପ୍ତ ସୂଚନାତ୍ମକ ବିବରଣୀ ଉଲ୍ଲେଖମାତ୍ର ।

(୧) **ପୌରାଣିକ**—ଆଲୋଚ୍ୟ କାଳ ମଧ୍ୟରେ ପରିମାଣ ଦୃଷ୍ଟିରୁ ପୌରାଣିକ ଉପାଖ୍ୟାନ ବା କଥାବସ୍ତୁ ସମ୍ବଳିତ ବହୁକାବ୍ୟ ଓଡ଼ିଆରେ ରଚିତ ହୋଇଅଛି । ସୁପ୍ରାଚୀନ ସର୍ବଭାରତୀୟ ସାଂସ୍କୃତିକ ଐତିହ୍ୟକୁ ଉପସ୍ଥାପିତ କରିବା ଯେ ଏହି କାବ୍ୟମାନଙ୍କର ଉଦ୍ଦେଶ୍ୟ ଏହା କହିବା ଅନାବଶ୍ୟକ । ଭକ୍ତ କବି ମଧୁସୂଦନଙ୍କ 'ବାଳରାମାୟଣ', ଗଙ୍ଗାଧର ମେହେରଙ୍କ 'ତପସ୍ୱିନୀ', 'ଇନ୍ଦୁମତୀ', 'ଅଯୋଧ୍ୟା ଦୃଶ୍ୟ' ଫକୀରମୋହନଙ୍କ ବୌଦ୍ଧାବତାର କାବ୍ୟ, ନନ୍ଦକିଶୋରଙ୍କ 'ଶର୍ମିଷ୍ଠା', ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ ଖ୍ରୀଷ୍ଟ (୧୮୯୪), ମଣିଚରଣ ମହାପାତ୍ରଙ୍କ ବ୍ରଜବନ୍ଧୁ ବିରହ ସୁରଲକ୍ଷ୍ମୀ (ଜଳନ୍ଧର ବଧ ପ୍ରସଙ୍ଗ), ନୀଳାଦ୍ରି ଦତ୍ତଙ୍କ 'ଚକ୍ରୋଦ୍ଧାର' (ଅଭିମନ୍ୟୁ ପ୍ରସଙ୍ଗ), ରଘୁନାଥ ପାଣିଗ୍ରାହୀଙ୍କ ଅଗ୍ନି-ପରୀକ୍ଷା (ସୀତାଙ୍କ ଚରିତ), ସତୀ ସାବିତ୍ରୀ, ଚିନ୍ତାମଣି ମହାନ୍ତିଙ୍କ ସୁଭଦ୍ରା (୧୯୨୦) ସପ୍ତସତୀ (୧୯୧୨) ମୋହିନୀ (୧୯୦୧-ମୋହିନୀ କନ୍ୟା ପ୍ରସଙ୍ଗ ସଂକଳିତ) ଓ ନୀଳମଣି ମିଶ୍ରଙ୍କ 'ଉମା ବିଳାସ' ପ୍ରଭୃତି କାବ୍ୟ ମାନଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

(୨) **କିମ୍ବଦନ୍ତୀ ଆଧାରିତ**—ଗୋପବନ୍ଧୁ ଦାଶଙ୍କ 'ଧର୍ମପଦ' ମଧୁସୂଦନ ଦାସଙ୍କ 'ନୀଳାଚଳ', ନୀଳକଣ୍ଠଙ୍କ 'କୋଣାର୍କେ', କୁଞ୍ଜ ବିହାରୀ ଦାସଙ୍କ 'ସ୍ମରଣିକା' (ଧରମା ଦ୍ୱାରା କୋଣାର୍କ ମନ୍ଦିର ନିର୍ମାଣ ଏହାର କଥା ବସ୍ତୁ) 'ପାଷାଣ ଚରଣେ ରକ୍ତ' କଳିଙ୍ଗ ଯୁଦ୍ଧ ଓ ଅଶୋକଙ୍କ ହୃଦୟ ପରିବର୍ତ୍ତନ), ରଘୁନାଥ ପାଣିଗ୍ରାହୀଙ୍କ 'ପ୍ରଣୟ ପରିଣାମ' (କାଞ୍ଚି-କେମା ପଦ୍ମାବତୀ ଚରିତ) ପ୍ରଭୃତି କାବ୍ୟ ମାନଙ୍କୁ ଏହି ପର୍ଯ୍ୟାୟ ଭୁକ୍ତ

କରାଯାଇ ପାରେ । କମ୍ବଦନ୍ତୀ ଆଧାରିତ କାବ୍ୟ ଗୁଡ଼ିକରେ ମଧ୍ୟ ପ୍ରାଚୀନ ସାଂସ୍କୃତିକ ଐତିହ୍ୟର ପରିପ୍ରକାଶ ଦେଖିବାକୁ ମିଳେ ।

(୩) **ଐତିହାସିକ** — ଗଙ୍ଗାଧର ମେହେରଙ୍କ ଅସଂପୂର୍ଣ୍ଣ କାବ୍ୟ 'ପଦ୍ମିନୀ', ବାସୁଦେବ ସୁଡ଼ଳ ଦେବଂକ ବୀରବାମା (୧୮୯୩-ଲକ୍ଷ୍ମୀବାଈଂକ ଚରିତ) ନନ୍ଦକିଶୋର ବଳଂକ 'କୃଷ୍ଣ କୁମାରୀ', ଚିନ୍ତାମଣି ମହାନ୍ତିଂକ ବଙ୍ଗମାତର୍ୟ (୧୯୦୧), ଭାରତ ଲଳନା (୧୯୧୪- ରାଜପୁତ କନ୍ୟା ପ୍ରଭାବତିଂକ ଚରିତ ମୂଳକ), ଆର୍ଯ୍ୟବାଳା ୧୯୧୪- ପଦ୍ମିନୀ ଚରିତ) ମୁକୁନ୍ଦ ଦେବ (୧୯୨୩ , ନୀଳକଣ୍ଠ ଦାସଂକ ଖାରବେଳ ( ) ରଘୁନାଥ ପାଣିଗ୍ରାହୀଂକ 'ବୀର ବାଳା', 'ଯାତ୍ରା', 'ଝାନ୍ସି ରାଣୀ', ହରେକୃଷ୍ଣ ମହତାବଂକ 'ପଲସି ଅବସାନେ' ପ୍ରଭୃତି ଏହି ପର୍ଯ୍ୟାୟଭୁକ୍ତ କାବ୍ୟ, ଏ ଗୁଡ଼ିକରେ ମଧ୍ୟ ବୀରତ୍ୱ, ସତୀତ୍ୱ, ସ୍ୱଦେଶ ପ୍ରୀତି, ଆତ୍ମୋତ୍ସର୍ଗ ପ୍ରଭୃତି ଆଦର୍ଶର ଉପସ୍ଥାପନା ହୋଇଅଛି । ଦେଶରେ ଜାତୀୟତା ବୋଧର ଉନ୍ମେଷ ଫଳରେ ହିଁ ଏତାଦୃଶ କାବ୍ୟ ରଚନା ପ୍ରବର୍ତ୍ତିତ ହୋଇଥିଲା ।

(୪) **କାଳ୍ପନିକ** — ଆଲୋଚ୍ୟ କାଳ ମଧ୍ୟରେ ଓଡ଼ିଆରେ ଯଥେଷ୍ଟ ସଂଖ୍ୟକ କାଳ୍ପନିକ କାବ୍ୟ ରଚିତ ହୋଇ ପାରିନାହିଁ । ବଳଭୁମାର ବଳଦେବ ଭଦ୍ରଂକ 'ଭ୍ରାନ୍ତ ହିଲ୍ଲୋଳ', 'ପାର୍ବତୀର ଉତ୍ତରାର୍ଦ୍ଧ', 'କାଦମ୍ବରୀ' ଚିନ୍ତାମଣି ମହାନ୍ତିଂକ 'ଶଶି ପ୍ରଭା', 'କଳ୍ପଲତା ସୂର୍ଯ୍ୟାନନ୍ଦ ଗୋସ୍ୱାମୀଂକର 'ବନୋଦ୍ଦୀମ' ପ୍ରଭୃତି ଅଳ୍ପ କେତୋଟି ମାତ୍ର କାବ୍ୟର ନାମ ଏ ସମ୍ପର୍କରେ ଉଲ୍ଲେଖ ଯୋଗ୍ୟ ।

(୫) **ଆଞ୍ଚଳିକ ପ୍ରକୃତି ବର୍ଣ୍ଣନା ମୂଳକ** — ରାଧାନାଥଙ୍କର 'ଚିଲିକା' କାବ୍ୟରେ ଆଦର୍ଶରେ ଓଡ଼ିଆରେ ବହୁ ସଂଖ୍ୟକ ପ୍ରକୃତି ବର୍ଣ୍ଣନା ମୂଳକ କାବ୍ୟ ରଚିତ ହୋଇଅଛି । ଗଙ୍ଗାଧର ମେହେରଙ୍କର 'ଉତ୍କଳଲକ୍ଷ୍ମୀ' ମୃତ୍ୟୁଂଜୟ ରଥଙ୍କ 'ନଗର' ବାସୁଦେବ ସୁଡ଼ଳଦେବଙ୍କ 'ଶରତୋତ୍ସବ' (ପ୍ରକାଶ କାଳ ୧୮୯୧, ) ବଳଭୁମାର ବଳଦେବଙ୍କର 'ସୁନାମୁଣ୍ଡା', ଚିନ୍ତାମଣି, ମହାନ୍ତିଙ୍କର

'ଘୁମୁସର କାବ୍ୟ' (୧୯୦୩), 'ମେଘାସନ', 'ଉଦ୍ୟାନଖଣ୍ଡ (୧୯୦୮), 'ସାଳନ୍ଦୀ' (୧୯୧୧), 'ଧବଳେଶ୍ୱର ଦର୍ଶନ' ୧୯୦୯, 'ସୁରଙ୍ଗୀ' କାବ୍ୟ (୧୯୧୨), 'ସିଂହଳବିଜୟ' (୧୯୧୪) 'ମହେନ୍ଦ୍ର', 'ଉତ୍କଳ କମଳା', 'ମହୋଦଧି' (୧୯୧୮), 'ପାଟଣା କାବ୍ୟ' (୧୯୪୧), ଚନ୍ଦ୍ରମଣି ଦାସଙ୍କ 'ଧାମବ', ଜୟକୃଷ୍ଣ ମିଶ୍ରଙ୍କ 'ମଞ୍ଜୁଳା ମଣିମାଳିନୀ', ଖଗେଶ୍ୱର ସେଠଙ୍କ 'ସୁରଙ୍ଗୀ' (ଫୁଲ୍‌ଝର ଏକ ନଦୀ ବିଶେଷ) ପ୍ରଭୃତି ରଚନା ଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ ।

(୬) **ସାମାଜିକ ବା ସାଂପ୍ରତିକ ଘଟଣା ମୂଳକ**— ସାହିତ୍ୟିକ ରୁଚି ପରିବର୍ତ୍ତନ ଓ ଉପନ୍ୟାସ ରଚନାର ଜନପ୍ରିୟତା ଫଳରେ ସଂଭବତଃ ସାମାଜିକ ବା ସାଂପ୍ରତିକ ଘଟଣାକୁ ଉପଜୀବ୍ୟ କରି କାବ୍ୟ ରଚନା କରିବାରେ ଏ ଯୁଗର କବିମାନେ ଅଧିକ ଆଗ୍ରହୀ ହୋଇ ପାରିନାହାଁନ୍ତି । ତଥାପି କବି ପ୍ରସାଦ ମହାପାତ୍ର 'ଅନୁରକ୍ତା', କୁଞ୍ଜବିହାରୀ ଦାଶ (କୁଶଭଦ୍ରାର ବନ୍ୟାପ୍ଲାବିତ ଅଞ୍ଚଳର ବର୍ଣ୍ଣନା ସମ୍ବଧୀୟ 'କଙ୍କାଳର ଲୁହ'), ଖଗେଶ୍ୱର ସେଠ 'ପଏଣ୍ଟ ସତୀ', 'ପ୍ରଣୟ ନିର୍ଝର' ଗୋପାଳ ଚନ୍ଦ୍ର ମିଶ୍ର 'ପାଟଣାଣୀ' ପ୍ରଭୃତି ଏତାଦୃଶ କେତେକ କାବ୍ୟ ରଚନା କରି ଅଛନ୍ତି । ମାତ୍ର ସାଂପ୍ରତିକ ସମସ୍ୟା ଓ ସାମାଜିକ ପରିବେଶରେ ପରିକଳ୍ପିତ କାବ୍ୟଭାବରେ ମାୟାଧର ମାନସିଂହଙ୍କର 'କମଳାୟନ' କାବ୍ୟଟି ସର୍ବଶ୍ରେଷ୍ଠ ଓ ଏକ ମହତ୍ତ୍ୱପୂର୍ଣ୍ଣ ସୃଷ୍ଟି ।

(୭) **ହାସ୍ୟ ଓ ବ୍ୟଙ୍ଗଧର୍ମୀ**— ଆଲୋଚ୍ୟ କାଳ ମଧ୍ୟରେ ହାସ୍ୟ ଓ ବ୍ୟଙ୍ଗଧର୍ମୀ କୌଣସି ଉଲ୍ଲେଖ ଯୋଗ୍ୟ କାବ୍ୟ ସୃଷ୍ଟିର ନିଦର୍ଶନ ପରିଲକ୍ଷିତ ହୁଏ ନାହିଁ । ଏ କ୍ଷେତ୍ରରେ ଫତୁରାନନ୍ଦ (ନିଲଠା କବି, କବି ଲଢ଼େଇ ବିଳାପ, ସାହିତ୍ୟ ମହାଭାରତ) ଓ ଉଦୟନାଥ ଷଡ଼ଙ୍ଗୀ (ସପ୍ତକ ଦୂତ ମହାକାବ୍ୟମ୍) ଯତ୍‌ସାମାନ୍ୟ ଉଦ୍ୟମ କରିଥିଲେହେଁ ସେମାନଙ୍କ କୃତିସମୂହ ସ୍ୱତନ୍ତ୍ର ଭାବେ ପୁସ୍ତକାକାରରେ ପ୍ରକାଶିତ ହୋଇନାହିଁ ।

(୮) **ଅନୂଦିତ ଅଥବା ବିଦେଶୀ କଥାବସ୍ତୁ ଆଧାରିତ**- ନବ ପ୍ରବର୍ତ୍ତିତ କାବ୍ୟିକ ପରମ୍ପରାକୁ ଅନୁସରଣ କରି ସଂସ୍କୃତ, ଇଂରାଜୀ

ଓ ହିନ୍ଦୀ ଭାଷାରୁ ଯେଉଁ କେତେକ କାବ୍ୟ ଓଡ଼ିଆରେ ଅନୂଦିତ ହୋଇ-ଅଛି ସେଥିରେ ପ୍ରାଚୀନ ସାଂସ୍କୃତିକ ଐତିହ୍ୟ ବଳୁଛରେ ବଗେଧର ସଂକେତ ପରିଲକ୍ଷିତ ହୁଏ ନାହିଁ । ରାଧାନାଥଙ୍କ ପରବର୍ତ୍ତୀ କାଳରେ ଅନୂଦିତ, ଉତ୍କୃଷ୍ଟ କାବ୍ୟକୃତି ଭାବରେ ବଡ଼କୁମାର ବଳଭଦ୍ର ଦେବଙ୍କ ରଘୁବଂଶ, ମୃତ୍ୟୁଞ୍ଜୟ ରଥଙ୍କ କୁମାର ସମ୍ଭବ', ନୀଳକଣ୍ଠ ଦାସଙ୍କ ପ୍ରଣୟିନୀ' (ଟେନିସନଙ୍କ ପ୍ରିନ୍‌ସେସର ଅନୁବାଦ) ଦାସ ନାୟକ (Enocharden), ଅଜୟ ଚନ୍ଦ୍ର ଦାସଙ୍କ ଶେଷ ବନ୍ଦୀଗୀତ' (Scottଙ୍କ Ley of the Last ministrel ର ଅନୁବାଦ) ଚନ୍ଦ୍ରମଣି ଦାସଙ୍କ 'ବିଜନ ପଲ୍ଲୀ' Gold smithଙ୍କର Deserted Village କାବ୍ୟର ଅନୁବାଦ , ରାଧା-ମୋହନ ଗଡ଼ନାୟକଙ୍କର 'ମେଘଦୂତ', ସୋରାବରୁସ୍ତମ Mathew) Arnold), ଚନ୍ଦ୍ରଶେଖର ମିଶ୍ରଙ୍କ 'ସୁର ସୁନ୍ଦରୀ, ସ୍ୱପ୍ନେଶ୍ୱର ଦାସଙ୍କ 'ଜାମାପୁନୀ' ପ୍ରଭୃତି କେତେକ କାବ୍ୟର ନାମ ଉଲ୍ଲେଖ ଯୋଗ୍ୟ ।

ମୋଟ ଉପରେ ମୁଦ୍ରଣ ଯନ୍ତ୍ରର ପ୍ରସାର ଯୋଗୁଁ ଏହିପରି ବହୁବିଧ ଛନ୍ଦୋବଦ୍ଧ କାବ୍ୟ ଆଲୋଚ୍ୟ କାଳ ମଧ୍ୟରେ ପ୍ରକାଶିତ ହେବାର ସୁଯୋଗ ଲାଭ କରିଥିଲେ ହେଁ ଏ ଯୁଗରେ କାବ୍ୟ ଆବଶ୍ୟକ ଜନ-ପ୍ରିୟତାର ସୌଭାଗ୍ୟ ଅର୍ଜନ କରିବାକୁ ସମର୍ଥ ହୋଇ ପାରିନାହିଁ । ଭାଷାର ଚମତ୍‌କାରିତା, କଳ୍ପନା ଋଚୁରୀ ଓ ରସ ସୃଷ୍ଟି ଦୃଷ୍ଟିରୁ ଏହି ସମୟରେ ରଚିତ ଖୁବ୍ କମ କାବ୍ୟ ସଫଳ ସୃଷ୍ଟିର ଗୌରବ ଦାବୀ କରେ । ଗଙ୍ଗାଧରଙ୍କ; 'ତପସ୍ୱିନୀ, 'ପ୍ରଣୟବଲ୍ଲରୀ' 'କୀଚକ ବଧ', ନୀଳ-କଣ୍ଠଙ୍କ "କୋଣାର୍କେ', ନନ୍ଦ କିଶୋରଙ୍କ, ଶର୍ମିଷ୍ଠା' ପ୍ରଭୃତି ଅଳ୍ପ କେତେ ଗୋଟି କାବ୍ୟରୁ ବାଦ୍ ଦେଲେ ଅନ୍ୟାନ୍ୟ କାବ୍ୟ ଗୁଡ଼ିକ ଏକ ପ୍ରକାର ଗତାନୁଗତିକ । ତାହାଁରେ ପ୍ରାଚୀନ ସାଂସ୍କୃତିକ ଐତିହ୍ୟ ପ୍ରତି ଶ୍ରଦ୍ଧା ଓ ଅନୁରାଗର ସ୍ୱର ହିଁ ପ୍ରତିଧ୍ୱନିତ ।

ପରିବର୍ତ୍ତନ ସାଧନ କରିବାରେ ଓ ଆଙ୍ଗିକ ଆଧୁନିକ ଓଡ଼ିଆ କାବ୍ୟ ରଚନା କ୍ଷେତ୍ରରେ ନୂତନ ପଦକ୍ଷେପ ନେବାରେ ମାୟାଧର ମାନସିଂହଙ୍କର କୃତିତ୍ୱ ଅଗ୍ରଗଣ୍ୟ । ଆଖ୍ୟାନ ସମ୍ବଳିତ କାବ୍ୟକୁ

ସଂଳାପଧର୍ମୀ କରିବାରେ ତାହାଙ୍କ କୃତିତ୍ୱ ଅନସ୍ୱୀକାର୍ଯ୍ୟ । ଅଧୁନା ଏତାଦୃଶ କାବ୍ୟ ରଚନାକୁ କାବ୍ୟନାଟିକା ନାମରେ ଅଭିହିତ କରାଯାଉଅଛି । ମାନସିଂହଙ୍କ 'ରାଜ କବି' (୧୯୨୫ରେ ରଚିତ ଓ ୧୯୨୮ ରେ ପ୍ରକାଶିତ), ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ କାବ୍ୟ ନାଟିକା ଉପେନ୍ଦ୍ର ଭଞ୍ଜଙ୍କ ଜୀବନ ସମ୍ପର୍କୀୟ ଏକ କିମ୍ବଦନ୍ତୀକୁ ଭିତ୍ତି କରି ଏହି କାବ୍ୟ ନାଟିକାଟି ରଚିତ । ପରବର୍ତ୍ତୀ କାଳରେ କବି ସାକ୍ଷୀ ଗୋପୀନାଥ କିମ୍ବଦନ୍ତୀ ଅବଲମ୍ବନରେ 'ପୂଜାରିଣୀ' ଓ କୁମାରୀର ଯୌବନ ପ୍ରାପ୍ତିକୁ ଉପଜୀବ୍ୟ କରି 'ପୂଷ୍ପିତା' ନାମକ ଦୁଇଟି କାବ୍ୟ ନାଟିକା ପ୍ରଣୟନ କରିଛନ୍ତି । ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ କାବ୍ୟ ନାଟିକା ରଚୟିତା ଭାବେ କାଳନ୍ଦୀ ଚରଣ ପାଣିଗ୍ରାହୀ (ସୌମ୍ୟା' ୧୯୩୨) ସଚ୍ଚିଦାନନ୍ଦ ରାଉତରାୟ (ପୂର୍ଣ୍ଣିମା-୧୯୩୨), ରାଧା ମୋହନ ଗଡ଼ନାୟକ ('କାଳିଦାସ' - ୧୯୩୩/୧୯୪୦), କୁଞ୍ଜବିହାରୀ ଦାଶ, (ପାଷାଣ ଚରଣେ ରକ୍ତ'-୧୯୪୫ ଓ ଗୃହିଣୀକା'-୧୯୫୭), ପ୍ରାଣକୃଷ୍ଣ ସାମଲ, (କସ୍ତୁରବା-୧୯୪୭), ବିନୋଦ ଚନ୍ଦ୍ର ନାୟକ (ଚନ୍ଦ୍ର ଓ ତାରା ୧୯୫୧), ଜ୍ଞାନୀନ୍ଦ୍ର ବର୍ମା (ବୋଲେ ହୁଁ ଟି—୧୯୪୦, 'କଲରେଇ ଫୁଲ ୧୯୬୦, ସ୍ୱର୍ଣ୍ଣ ଯୁଗର ସଂଧ୍ୟା ୧୯୫୭) ପ୍ରଭୃତି ସୁନାମ ଧନ୍ୟ' ଅଙ୍ଗ ସଜ୍ଜା ଓ ବିଷୟ ବସ୍ତୁର ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ଭାନୁମତୀର ଦେଶ' କାବ୍ୟ ଗ୍ରନ୍ଥର ମହତ୍ତ୍ୱ ମଧ୍ୟ ଅନସ୍ୱୀକାର୍ଯ୍ୟ, ଆଲୋଚ୍ୟ କାଳ ମଧ୍ୟରେ ପ୍ରାଚୀନ କାବ୍ୟର ପରମ୍ପରାକୁ ମଧ୍ୟ କେହି ଅନୁସରଣ କରି କାବ୍ୟ ଓ ଗୀତିକାବ୍ୟ ପ୍ରଣୟନ କରିଯାଇଛନ୍ତି । ସେମାନଂକ ମଧ୍ୟରୁ କାବ୍ୟ ପ୍ରଣେତା ଭାବେ ଗୋପବନ୍ଧୁ ଦାସ (ଗୋ-ମାହାତ୍ମ୍ୟ) ଗୋଡ଼ଲକ୍ ପ୍ରଧାନ (ଇନ୍ଦୁ ରେଖା, ସାଣ୍ଡିଲ୍ଲୀ), ଚନ୍ଦ୍ର ଶେଖର ପଟ୍ଟନାୟକ (ନୀଳାଚଳ ମାଧୁରୀ), ଭୁବନେଶ୍ୱର ମିଶ୍ର (ପ୍ରତିଜ୍ଞା', 'ଭବାନୀ' 'ପ୍ରକ୍ଷାଳନ' ଓ ଗୀତିକାବ୍ୟ ପ୍ରଣେତା ଭାବେ ବାଳକୃଷ୍ଣ ପାଠ (ବିଚାର କାବ୍ୟ), ବଚ୍ଛନ୍ଦ ପଟ୍ଟନାୟକ ('କବିତା କୁମୁଦ'), ମନ ମୋହିନୀ ଦେବୀ (ଅର୍କାବଳୀ) ଲକ୍ଷ୍ମୀକାନ୍ତ ମହାପାତ୍ର (ଚଟକ ଚନ୍ଦ୍ରହାସ ଚମ୍ପୂ) ପ୍ରଭୃତିଙ୍କର ନାମ ଉଲ୍ଲେଖ ଯୋଗ୍ୟ ।

କହିବା ଅନାବଶ୍ୟକ ଏହି କାବ୍ୟ ଓ ଗୀତିକାବ୍ୟ ଗୁଡ଼ିକ ମୁଖ୍ୟତଃ ଓଡ଼ିଶାର ପ୍ରାଚୀନ ସଂସ୍କୃତିକ ଐତିହ୍ୟକୁ ଭିତ୍ତି କରି ରଚିତ

ହୋଇଅଛୁ ଓ ଏଥିରେ ଊଣା ଅଧିକେ ଓଡ଼ିଶାର ପାରମ୍ପରିକ କାବ୍ୟ ରଚନା ରୀତି ଓ ଛନ୍ଦ ଅନୁସୃତ ହୋଇଅଛୁ । ଏଥିରେ ଓଡ଼ିଶାର କିମ୍ବଦନ୍ତୀ, ସ୍ଥାପତ୍ୟର ଗୌରବ, ଧର୍ମ ବିଶେଷତଃ ଜଗନ୍ନାଥଙ୍କର ମହିମା, ବିଭିନ୍ନ ସ୍ଥାନ ବା ଦେବପୀଠର ଗୌରବ, ପର୍ବ ପର୍ବାଣି, ଯାତ୍ରା ଉତ୍ସବ ଓ ବିଶେଷତଃ ପ୍ରକୃତିର କମନୀୟତା ବର୍ଣ୍ଣିତ ହୋଇ ଅଛୁ । ଭାରତର ତଥା ଓଡ଼ିଶାର କେତେକ ଇତିହାସ ପ୍ରସିଦ୍ଧ ବ୍ୟକ୍ତିଙ୍କ ଜୀବନ ଚରିତକୁ ମଧ୍ୟ କେହି କେହି କାବ୍ୟ ରୂପ ଦେଇ ଅଛନ୍ତି ।

ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆରେ କାବ୍ୟ ଯୁଗର ଅବସାନ ଓ ଗୀତି କବିତାର ପ୍ରାଧାନ୍ୟ ପ୍ରତିଷ୍ଠା ଲାଭ କରିଅଛୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୋପାଳ ଚନ୍ଦ୍ର ପ୍ରହରାଜ, କବି ଶେଖର ଚିନ୍ତାମଣି ମହାନ୍ତିଙ୍କୁ ଯଥାର୍ଥତଃ ରାଧାନାଥ ଯୁଗର ଶ୍ରେଷ୍ଠ ଶ୍ରେଷ୍ଠ କବି ଭାବେ ଉଲ୍ଲେଖ କରି ଅଛନ୍ତି । ଓଡ଼ିଆରେ ଗୀତି କବିତାର ଯୁଗ ପ୍ରବର୍ତ୍ତିତ ହେବା ପରେ ପ୍ରତ୍ୟକ୍ଷ ଭାବେ ଗୀତି କବିତା ମାଧ୍ୟମରେ ପ୍ରାଚୀନ ସାଂସ୍କୃତିକ ଐତିହ୍ୟକୁ ଅସ୍ୱୀକାର କରିବାର ପ୍ରଚେଷ୍ଟା ପରିଲକ୍ଷିତ ହେଲା । ନୂତନ ବିଗ୍ଲବ ଧାରା ଓ ସାମ୍ୟବାଦୀ ଭାବ ଧାରାର ପ୍ରସାର ପ୍ରାଚୀନ ମୂଲ୍ୟବୋଧର ଭିତ୍ତିକୁ ବିପର୍ଯ୍ୟସ୍ତ କରି ଦେଲା । ଏହାର ପରିଣାମ ସ୍ୱରୂପ ସବୁଜ (ରୋମାଣ୍ଟିକ) ତଥା ପ୍ରଗତିବାଦୀ କବିଗଣଙ୍କ କଣ୍ଠରୁ ଧ୍ୱନିତ ହେଲା –

୧ "ସମାଜେ ମାନବ ନାହିଁ
ଲୋକମତ ଦଳିବ ଚରଣେ"
(ଅନ୍ନଦାଶଂକର)

(୨) "ମରଣ ପରେ ଅମର ହେବ ମୋ ଆଶା ନାହିଁ ପୋଷି
ସେ ଖାଲି ମନଭୁଲଣି ମିଛକଥା
ଲଭିଲେ ଥରେ ନଜନେ ଆଉ ଜୀବନ ଦୀପଶିଖା
ମରଣ ପରେ ନାହିଁରେ କିଛୁ ନାହିଁ ।
(କାଳନ୍ଦୀ ଚରଣ)

(୩) ଆଜ ମୁଁ ଆସିଛି ପଶୁ, ନିଶାଚର, ମଣିଷର ଦାବି ଲାଗି,
ମଣିଷ କବରୁ ଜନ୍ମ ମୋହରରେ, ଧ୍ୱଂସେ ମୁଁ ଅନୁରାଗୀ ।
(ସଚ୍ଚି ରାଉତରାୟ)
'ପରମ୍ପରାର ସରଣୀ ଅଥବା ଛୁଟୁଛି ମୁଁ ହିଂସେ ମୁକ୍ତକାମୀ ।'

ତଥାପି ସାଂପ୍ରତିକ କବିମାନଂକ ଗୀତି ରଚନାରେ ପୌରାଣିକତାର ପ୍ରତ୍ୟକ୍ଷ ଅଥବା ପରୋକ୍ଷ ପ୍ରଭାବକୁ ଅସ୍ୱୀକାର କରାଯାଇ ନପାରେ । ପୁରାଣର ବିବିଧଚରିତ୍ର ଆଧୁନିକ କବିମାନଙ୍କୁ କବିତା ରଚନା କରିବା ଲାଗି ପ୍ରେରଣା ଯୋଗାଇଛି । ପରୋକ୍ଷ ଭାବେ Racial memory (ମନସ୍ତତ୍ତ୍ୱବିତ୍‌ଂକ ପରିଭାଷାରେ Collective unconsicious)ର ସ୍ମାରକ ସ୍ୱରୂପ ବହୁ Architypal, imageର ବ୍ୟବହାର ଆଧୁନିକ କବି ମାନଂକ କବିତାରେ ଦେଖିବାକୁ ମିଳୁଛି । ଆଧୁନିକ ଜୀବନ ସହ ପୌରାଣିକ ଚରିତ୍ରର ସମ୍ପୃକ୍ତି ଦର୍ଶାଇବାରେ ଏବଂ ଅତୀତର ଐତିହ୍ୟ ଓ ପୌରାଣିକତା ସହ ସାଂପ୍ରତିକ ଜୀବନାନୁଭୂତିର ସମନ୍ୱୟ ସମ୍ପାଦନ କରିବାରେ ଆଧୁନିକ କବି ବେଶ୍ ଅନୁରକ୍ତ । ସୀତାକାନ୍ତ ମହାପାତ୍ରଙ୍କ କୃତିତ୍ୱ ଏ କ୍ଷେତ୍ରରେ ଲକ୍ଷଣୀୟ ।

ପ୍ରଗତିଶୀଳ, ପରମ୍ପରା ବିରୋଧୀ କବିମାନଙ୍କ କବିତାରେ ମଧ୍ୟ ପୌରାଣିକ ଚିତ୍ରକଳ୍ପ, ଆର୍କିଟାଇପର ବହୁଳ ବ୍ୟବହାର ଦେଖିବାକୁ ମିଳେ । ସଚ୍ଚିଦାନନ୍ଦ ରାଉତରାୟଙ୍କ 'ରାକ୍ଷସ' କବିତାରୁ ପ୍ରେତର ଅଥବା ରାଧା ମୋହନ-ଗଡ଼ନାୟକଙ୍କ 'ମୌସୁମୀ' କବିତାରୁ ଦୈତ୍ୟର ଚିତ୍ରକଳ୍ପର ଦୃଷ୍ଟାନ୍ତ ଏଠାରେ ଉପସ୍ଥାପନ କରାଯାଇ ପାରେ ।

ମଣୁଛ କି ମୋତେ
ଅଲୁକିତ-କେଶ
ବଲ୍କଳିତ ବେଶ
ଦୈତ୍ୟ ବୋଲି ?

× × ×

ଉରନ ମୋତେରେ, ଉରନ ମୋତେରେ ମର୍ତ୍ତ୍ୟ ଜୀବ
ଛୁଦ୍ମ ସିନା ଏ ମୂର୍ତ୍ତି ମୋହର ମୂର୍ତ୍ତିତ ଶିବ ।

ଜନ୍ମଭୂମି ଓଡ଼ଶାରେ ଦୈନ୍ୟ ଓ ନପୀଡ଼ନର ବଖିଷିକାକୁ ଲକ୍ଷ୍ୟ କରି ସଚ୍ଚିଦାନନ୍ଦ ଲେଖିଛନ୍ତି—

ଲକ୍ଷ୍ମୀହୀନ ଚୋର ମରୁ ବୁକେ
ଲକ୍ଷ୍ମୀର ପେଚକ ଆଜ ଡାକ ଘୁଡ଼େ
ଅଶ୍ଳୀଳ କୌତୁକେ ।

(ହେ ମୋର ନଉପବାଧ ଦେଶ)

ସାଂପ୍ରତିକ କବିତାରେ ସ୍ୱର୍ଗ, ନର୍କ, ଶ୍ରୀକୃଷ୍ଣ, ରାଧା, ଲଳିତା, ଲକ୍ଷ୍ମୀ, ସରସ୍ୱତୀ, ହିରଣ୍ୟକଶିପୁ, ରାବଣ, ବୈଦେହୀ, ଯଶୋଦା, ଦେବକୀ, ଧୂର୍ଜଟୀ, ଅକ୍ରୁର, ମହିଷାସୁର ଜଗନ୍ନାଥ, ଜାରାଶବର, ମହାରାବଣ, ଆତ୍ମା ପରମାତ୍ମା, ଭୂତ ପ୍ରେତ, ବୁଢ଼ୀ ଅସୁରୁଣୀ, ହୀଶକ୍ତୁ, ଯୋଗୀ, ଶିବରାତି ପ୍ରଭୃତି Architypal, image ଭାବେ ବ୍ୟବହୃତ ହେଉଛି । କେତେକ ପୌରାଣିକ ଚରିତ୍ରଙ୍କୁ ନୂତନ ଦୃଷ୍ଟିରେ ଦେଖି କେହି କେହି ସ୍ୱତନ୍ତ୍ର କବିତା ମଧ୍ୟ ଲେଖିଛନ୍ତି । (୧) ଆଧୁନିକ ଯନ୍ତ୍ରଣା ବିଧୁର ଜୀବନକୁ ପୌରାଣିକ ରୂପକଳ୍ପ ଓ ଆର୍କିଟାଇପାଲ ଇମେଜ ମାଧ୍ୟମରେ କପରି ସାମ୍ପ୍ରତିକ କବିଗଣ ଅଭିବ୍ୟକ୍ତ ଦେଇଛନ୍ତି ତାହା ନିମ୍ନୋକ୍ତ ଉଦ୍ଧୃତିରୁ ଅନୁମେୟ –

---

(୧) (କ) ଲଳିତା—ରାଧାମୋହନ ଗଡ଼ନାୟକ ।

(ଖ) ହିରଣ୍ୟ କଶିପୁ – ଜ୍ଞାନୀନ୍ଦ୍ର ବର୍ମା ।

(ଗ) ରାବଣ—ରମେଶ ଧଳ ।

(୧) "ଆମେ ଖାଲି ମାଂସ ଖାଉ ଓ ଉଷୁମ ରକ୍ତ ପିଉ
ଅଥଚ ଏ ହୁଳହୁଳି - କାହିଁକିଏ ମାଣବସା ଲକ୍ଷ୍ମୀ ଗୁରୁବାର ।"

(ଉଦ୍‌ବନସ୍ପନ ହନୁସୋ — ସୌଭାଗ୍ୟ କୁମାର)

(୨) "ଅପୂରଣୀୟ ଇଚ୍ଛା ଆଉ କ'ଣ ବା ରହିଗଲା
ପୁଣି ଯିବି ତୀର୍ଥ କରି
ମୋ ଘରେତ ବିଦ୍ୟମାନ ଜଗନ୍ନାଥ

ମୋ ବଡ଼ ଦାଣ୍ଡରେ ପଣି ସହସ୍ର ଭିକାରି - ଠିଆ
ସମସ୍ତ କଣ୍ଠରୁ ଝରେ ସେଇ ଏକା ସ୍ୱର
ମାଆ ଗଣ୍ଡେ ଭିକ୍ଷାଦିଅ...... ବହୁ ଭିକ୍ଷାଥାଳ ।"
(ଏଇ ମୋ ଶ୍ରୀକ୍ଷେତ୍ର— ପଞ୍ଚାନନ ଦାଶ)

(୩) "ଦୁଃଶାସନ !
ସାବଧାନ
ରାତି ହେଲା ଶେଷ ।
ସର୍ପ ସମ ଆସେ ଛୋଟି ବେଣୀ ମୁକ୍ତ
ଘନ କୃଷ୍ଣ କେଶ ॥" (କେଶ, — ଦଚି ରାଉତରାୟ)

ସାଂପ୍ରତିକ କବିତାରେ ଏହିପରି archetypeର ବ୍ୟବହାର ପ୍ରାଚୀନ ସାଂସ୍କୃତିକ ଐତିହ୍ୟର ପ୍ରଭାବର ପ୍ରକୃଷ୍ଟ ନିଦର୍ଶନ । ଯେଉଁ ଆଦିମ ପରିସ୍ଥିତି, ଚରିତ୍ର ଓ ରୂପକଳ୍ପ ସମୂହର ଧାରଣା ଆମ ଜୀବନ ଧାରା ସହ ନିବିଡ଼ ଭାବେ ଯୁଗ ଯୁଗ ଧରି ସଂପୃକ୍ତ ରହି ଆସିଛି ତାହାହିଁ ଆମ ସାହିତ୍ୟରେ ପ୍ରତିଫଳିତ ହେବା ଏକାନ୍ତ ସ୍ୱାଭାବିକ । ଆର୍କିଟାଇପ୍‌ର ସଂଜ୍ଞା ସଂପର୍କରେ ମଧ୍ୟ ତାହାହିଁ କୁହାଯାଉ ଅଛି । (୧) ମୋର ମନେହୁଏ ଆର୍କିଟାଇପ୍ ମାଧ୍ୟମରେ ଭାବ ଅଭିବ୍ୟକ୍ତିର ଏହି ଅଭିନବ ପରୀକ୍ଷା ବା ରୀତି ସାଂପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଛି ଓ ଏହାଦ୍ୱାରା ଭାବ ଅଭିବ୍ୟକ୍ତି ଅଧିକ ଶକ୍ତିଶାଳୀ ହୋଇଛି, ପରମ୍ପରା ସହ ଆମର ସଂପୃକ୍ତି ନିବିଡ଼ତର ହେଉଛି ।

---

(୧) A basic situation, character, or image seen as constantly recurring in life and therefore in literature.
Dictionary of world leterary terms. Page-19.

---

ଡକ୍‌ଟର ଜାନକୀ ବଲ୍ଲଭ ମହାନ୍ତି
ମୁଖ୍ୟ ଅଧ୍ୟାପକ
ଓଡ଼ିଆବିଭାଗ
ରେଭେନ୍‌ସା କଲେଜ
କଟକ-୩

# ଆଧୁନିକ ଓଡିଆ କାବ୍ୟ କବିତାରେ ଧର୍ମ ଓ ଦର୍ଶନର ପ୍ରଭାବ

ମଣିଷ ସୃଷ୍ଟିର ଇତିହାସ ପରି ମଣିଷ ମନର ଆଧ୍ୟାତ୍ମିକ ଜିଜ୍ଞାସା, ଯେପରି ବିଚିତ୍ର ସେହିପରି ରହସ୍ୟମୟ । ବାସ୍ତବରେ ମଣିଷର ସାହିତ୍ୟ ତାର ଏଇ ଆଧ୍ୟାତ୍ମିକ ଜିଜ୍ଞାସାର ଫଳ । ଆଦିମ ମଣିଷ ଯେତେବେଳେ ଅଜ୍ଞାନ ଅନ୍ଧକାର ଭିତରୁ ମୁକ୍ତିପାଇ ଜ୍ଞାନାଲୋକରେ ଉଦ୍ଭାସିତ ହେଲା ଆଉ ଅକପଟ ଭାବରେ ପ୍ରକାଶ କଲା "ମୋତେ ଅନ୍ଧାରରୁ ଆଲୋକକୁ ନିଅ" ସେତେବେଳେ ସୁଦ୍ଧା ତା ମନରେ ଫିଟିଥିଲା ସାହିତ୍ୟର ଚିରନ୍ତନ ଉତ୍ସ । ସେ ତାପରେ ନିଜର ଅନ୍ୱେଷଣ କଲା । ତାର ଅନ୍ୱେଷାର ଦିଗ୍‌ବଳୟ ଧୀରେ ଧୀରେ ହେଲା ସଂପ୍ରସାରିତ, ଆତ୍ମ ଆବିଷ୍କାରର ସେ ଉନ୍ମାଦନା ବାରବାର ତାର ମନରେ ସୃଷ୍ଟି କଲା । ବହୁ ଅସମାହିତ ରହସ୍ୟର ଦୁରନ୍ତ ପ୍ରଶ୍ନ । ସେ କିଏ ! କଣ ତାର ପରିଚୟ କେଉଁଠୁ ତାର ସୃଷ୍ଟି — କେଉଁଠି ତାର ଲୟ । କିଏ ଅବା ତାର ସ୍ରଷ୍ଟା – କିଏ ଅବା ଉଦ୍‌ବେଶ ଫୁଲରେ ସୁଗନ୍ଧ କୋକିଳର କଣ୍ଠେ ଦିଏ ଛନ୍ଦ ! କାହାର ନିର୍ଦ୍ଦେଶରେ ଗତିଯାଏ ଦିନ ଆସେ । ଏ ସବୁ ପ୍ରଶ୍ନ ତାର ଆତ୍ମ ଆବିଷ୍କାର ପଥକୁ ବହୁଧା ବିଭକ୍ତ କରିଦେଲା । ତାର ଉତ୍ତେଜନା ଧୀରେ ଧୀରେ ମାର୍ଜିତ ହେଲା ପରିଚ୍ଛନ୍ନ ହେଲା ଜନ୍ମ ନେଲା କାବ୍ୟିକ ଆବେଗ । ଆଉ ସେହି ଆବେଗର ପରିଣତି ହେଲା ତାର ଆଧ୍ୟାତ୍ମିକ ଜିଜ୍ଞାସା ତାର ଦାର୍ଶନିକ ଜିଜ୍ଞାସା, ତାର ଧାର୍ମିକ ଜିଜ୍ଞାସା ।

ସମ୍ଭବତ, ସେଇଥି ପାଇଁ ପୃଥିବୀର ପ୍ରାୟ ସବୁ ସାହିତ୍ୟରେ ପ୍ରଥମ ମାଙ୍ଗଳିକ ଧ୍ୱନି ଶୁଭିଥିଲା ଧର୍ମ ଦର୍ଶନର ସଫଳ ଉଚ୍ଚାରଣ ମଧ୍ୟରେ । ଓଡ଼ିଆ ସାହିତ୍ୟ ମଧ୍ୟ ଏଇ ସନାତନ ନିୟମରୁ ଅଲଗା

ଉଦ୍ଧାର ନାହିଁ । ସେଇଥି ପାଇଁ ଓଡ଼ିଆ ସାହିତ୍ୟର ଆରମ୍ଭରୁ ଆଜଯାଏ ସାହିତ୍ୟର ବିଭିନ୍ନ ଯୁଗରେ ଆମେ ବହୁ ଧର୍ମଦର୍ଶନର ପ୍ରଭାବ ଲକ୍ଷ୍ୟ କରିଥାଉଁ । ଓଡ଼ିଆ କବିତାର ପ୍ରଥମ ଉଚ୍ଚାରଣ 'ଚର୍ଯ୍ୟାପଦ' ରେ 'ବୌଦ୍ଧଧର୍ମ ଦର୍ଶନ ; ଶିଶୁବେଦରେ ନାଥ ଧର୍ମ ଦର୍ଶନ ; କଳସା ଚଉତିଶାରେ ଶୈବଧର୍ମ ଦର୍ଶନ, ସାରଳା ସାହିତ୍ୟରେ ଶାକ୍ତଧର୍ମ-ଦର୍ଶନ, ପଞ୍ଚସଖା ସାହିତ୍ୟରେ ବୈଷ୍ଣବ ଧର୍ମ ଦର୍ଶନ, ଭୀମଭୋଇଙ୍କ କବିତାରେ ମହିମାଧର୍ମ-ଦର୍ଶନ, ମଧୁସୂଦନଙ୍କ କବିତାରେ ବ୍ରାହ୍ମଧର୍ମ ଦର୍ଶନର ପ୍ରଭାବ ଯେ କୌଣସି ପାଠକ ସହଜରେ ଲକ୍ଷ୍ୟ କରିପାରେ । ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ଉନ୍ମେଷ ପର୍ଯ୍ୟନ୍ତ ଏଇଧାରାଟି ନିରବଚ୍ଛିନ୍ନ ଭାବରେ ପ୍ରବାହିତ ହୋଇଥିଲା । ମାତ୍ର ଆଧୁନିକ କାଳରେ ଏ ଧାରା ଏକ ସମ୍ପୂର୍ଣ୍ଣ ନୂତନ ମୋଡ଼ ନେଇ ଏକ ନୂତନ ସାହିତ୍ୟିକ ଜିଜ୍ଞାସାରେ ପରିଣତ ହୋଇ ଯାଇଛି । ଏହାର କାରଣ ଅନୁସନ୍ଧାନ କରିବାକୁ ହେଲେ, ଆମକୁ ଏଯୁଗ ସାହିତ୍ୟର ପୃଷ୍ଠଭୂମିରେ ଦୃଷ୍ଟି ନିକ୍ଷେପ କରିବାକୁ ପଡ଼ିବ ।

ଦୁଇ ଦୁଇଟି ବିଶ୍ୱଯୁଦ୍ଧର ଭୟାବହ ପରିଣତି ମନୁଷ୍ୟକୁ ଭୋଗ କରିବାକୁ ପଡ଼ିଲା, ତା ମନର ସକଳ କୋମଳ ସୂକ୍ଷ୍ମ ପ୍ରବୃତ୍ତିର ତାର ମଧ୍ୟ ଛିଡ଼ିଗଲା । ଫଳରେ ବେସୁରା ହୋଇ ଉଠିଲା ତାର ଜୀବନ ବୀଣାର ଛନ୍ଦ । ତା ମନରେ ଆସିଲା ସଂଶୟ । ଧର୍ମ ବିଶ୍ୱାସ ପ୍ରଭୃତି ପ୍ରତି ସେ ହେଲା ସନ୍ଦିହାନ୍ । ଯେଉଁ ଈଶ୍ୱରଙ୍କୁ ସେ ବିଶ୍ୱାସ କରିଥିଲା, ଯାହାଙ୍କ ଉପରେ ସୁଖ ଦୁଃଖରେ ନିର୍ଭର କରି ମନେ ମନେ ଆଶ୍ୱସ୍ତ ହୋଇଥିଲା ତାଙ୍କର ସ୍ଥିତି ସଂପର୍କରେ ତା ମନରେ ଜାଗିଲା ଅବିଶ୍ୱାସ, ସୃଷ୍ଟି ହେଲା ମନରେ ତାର ଅଜସ୍ର ପ୍ରଶ୍ନବାଚୀ — ଫଳରେ ତା'ର ଜୀବନ ତାର ସାହିତ୍ୟ ତାର କଳା ସବୁ କିଛି ବଦଳିଗଲା । ଆଧୁନିକ ସାହିତ୍ୟ ବସ୍ତୁତଃ ସେଇ ଢଙ୍ଗ ବଦଳର ମୂକ ସାକ୍ଷୀ ।

ଏଇ ପୃଷ୍ଠଭୂମିରେ, ଆଧୁନିକ ଓଡ଼ିଆ କବିତାରେ, ଦର୍ଶନର ଯେଉଁ ପ୍ରାଥମିକ ସଙ୍କେତ ଆମେ ଦେଖିବାକୁ ପାଉଁ, ତାହା ହେଲା ମାର୍କସବାଦ । ରୁଷିଆରେ ଏ ବାଦଟିର ଜନ୍ମ ଓ ପରେ ପରେ ତାହା

ପୃଥିବୀର ସବୁ ଧାର୍ମିକଙ୍କୁ ଜଣା ଅଧିକେ ପ୍ରଭାବିତ କଲା । ଶୋଷକର 'ରାଜହଂସପୁର'ରୁ ବାହାରି କବିତା ଆସି ଠିଆ ହେଲା ଶୋଷିତର ରାଜଦାଣ୍ଡରେ । କୋଟି କୋଟି ସର୍ବହରା ଶୋଷିତ ଖଟିଖିଆଙ୍କ ଜୀବନ-ନିଶ୍ୱାସ କବିତାରେ ରୂପାୟିତ ହେଲା । ନରସିଂହ ଦେବଙ୍କ କୋଣାର୍କ ମନ୍ଦିର, ଯାହା ଏତେ କାଳଧରି ତାଙ୍କ କୀର୍ତ୍ତିର ଥିଲା ମହାମୂଲ୍ୟ ସ୍ମାରକୀ ଆଧୁନିକ କବିର ଦୃଷ୍ଟିରେ । ତାହା ଏକ ସାମନ୍ତବାଦୀ ରୁଚିର ପ୍ରତୀକ ଭାବରେ ଆତ୍ମପ୍ରକାଶ କଲା । କବିର କାବ୍ୟ ବୀଣାରେ ବାଜି ଉଠିଲା ନୂତନ ସ୍ୱର, ନୂତନ ଛନ୍ଦ ।

"ସେଠି ଅଛି ଖାଲି ଫୁଲର ଫସଲ,
ସପନର ମାଳ ତୋଡ଼ା ।
ଶିଳ୍ପୀର ସୂର୍ଯ୍ୟ ପାହାନ୍ତ ପହରେ
ପ୍ରଣାମ ତା ନେଉଁ ନେଉଁ ।
କହିଯା ଏ ଧରା କାନେ,
ଜୀବନର ଯେତେ କ୍ଷତ-ଅପମାନ
ଗାଇ ନାହିଁ କିଏ ଗାନେ ।
ରମ୍ୟ କଳାର ଲୀଳା
କହୁଛି କହିନ ମଣିଷର କଥା,
କହିବାର ଯାହା ଥିଲା ।
( ସଚ୍ଚି ରାଉତରାୟ )

ପ୍ରଥମ ଥର ପାଇଁ ବସୁ ମହାରଣା ଆଜି ଶିବେଇ ସାନ୍ତରାଙ୍କ ନିଷ୍ଠା ଶ୍ରମିକ ଆଜି କୃଷକଙ୍କ ଦାନ କବିତାରେ ପାଇଲା ତାର ନାଯ୍ୟ ପୁରସ୍କାର ।

"କୋଟି କୋଟି ବିଶୁ ମହାରଣା ପୁଣି
ଶିବେଇ ସାମନ୍ତ କେତେ ।
ଏଇ ମନ୍ଦିର ତଳେ ଶୋଇଛନ୍ତି
କଳାର ଫସଲ କ୍ଷେତେ ।
'ଗଢ଼ିବାକୁ ଏଇ ମନ୍ଦିର କଳା
ଶ୍ରମିକ ରକ୍ତ ଦାନ ।

କୃଷକ ଦେଲା ତା କନକ ଶସ୍ୟ
ରାଜ କୋଷେ ଅକଳନ ।
ଅଥଚ କଳାର ଦରବାରେ ନାଇ
ତାଙ୍କ ବ୍ୟଥାର ସ୍ଥାନ ।
ହାସ୍ୟ ବା ଲୁହ ଅଥବା କେଉଁଠି
ଫସଲ କଟାର ଗାନ ।

ମଣିଷର ଭଗବାନ ସତ୍ତ ପାହ୍ୱାଲ ବେଳକୁ ତା ନକଟରେ ଜଣେ ସାଧାରଣ ମଣିଷରେ ପରଣତ ହୋଇଗଲେ । ଯେଉଁ ଭଗବାନଙ୍କୁ ମଣିଷ ଭୟ ଓ ଭକ୍ତିର ରଜ୍ଜୁରେ ନବଡ଼ ଭାବରେ ବାନ୍ଧ ରଖିଥିଲା । ସେ ରଣ୍ଜି 'ହ୍ରଗୁନା ହୋଇଗଲା । ସେ ଭଗବାନଙ୍କ ପାଖକୁ ପଠାଇଲା ଚରମ ପତ୍ର । ମଣିଷ ସମ୍ପର୍କରେ ମଣିଷର ଧାରଣା ଗଲା ବଦଳ । ବସ୍ତୁତଃ ଆତ୍ମାର ଆହ୍ୱାନରୁ ନଜକୁ ବଞ୍ଚିତ କର ମଣିଷ ସୁଦ୍ଧା ପଶୁରେ ପରଣତ ହୋଇଗଲା । କବର ଲେଖମାରେ ମଣିଷର ପରଚୟ ଲେଖା ହେଲା ନୂତନ ଭାବରେ ।

'ଧାର୍ଦ୍ଦ ବରଷ କଟାଇଲି
ଏଇ ଭୂଲୋକେ ମୁଁ ଦେବ ଦୂତ
ଅର୍ଜନ କଲି ଅନୁଭୂତି ଅଦଭୂତ
ହୃଦୟେ ହୃଦୟେ ଭେଟିଲି ସାହାରା
ସକାଳେ ଦେଖିଲି ସଂଧ୍ୟାର ତାରା ।
ମଣିଷ ନାମରେ ଦୁନଆଟା ଭରା
ଗନ୍ଧ ମୂଷିକ ହିଂସ୍ର ପଶୁର ଯୂଥେ
ଆଶ୍ଳେଷ ଦେଇ ଆହତ ହେଲାରେ
ପ୍ରବଳ ଦନ୍ତା ଘାତେ ।

( ରବୀନ୍ଦ୍ର ନାଥ ସିଂହ )

କେବଳ ମାର୍କସୀୟ ଦର୍ଶନ ନୁହେଁ ଫ୍ରଏଡ଼ୀୟ ଦର୍ଶନ ମଧ୍ୟ ମଣିଷର ଯୁଗ ଯୁଗର ଧାରଣାକୁ ଓଲଟ ପାଲଟ କରଦେଲା । ମାର୍କସୀୟ

ଦର୍ଶନ ଭୌତିକ ଜଗତରେ ଆଣିଥିଲା ବିପ୍ଳବ । କିନ୍ତୁ ଫ୍ରଏଡ଼ୀୟ ଦର୍ଶନ କଲା ଚିନ୍ତା ରାଜ୍ୟରେ ନୂତନତ୍ତ୍ୱର ଆବାହନ । ଏ ଦର୍ଶନରେ ମଣିଷର ଚେତନ ମନ ଅପେକ୍ଷା ଅବଚେତନର ପ୍ରାଧାନ୍ୟ ବେଶୀ । ମଣିଷର ମନ ବହୁ ଜାନ୍ତବ କାମନାରେ ଭରପୂର ଇନ୍ଦ୍ରିୟ ସୁଖ ପାଇଁ ସେ ବ୍ୟାକୁଳ ତେଣୁ କବିତା:ରେ ସେ ବ୍ୟାକୁଳତାର ସ୍ୱର ବେଶ ସ୍ପଷ୍ଟ ଓ ଗମ୍ଭୀର ।

ଅନୁଭବ ଯେତେ ଥିଲା, ସେ ସବୁକୁ
ଶୂନ୍ୟ ମେଘ ଭଳି ଫିଙ୍ଗି ଦେଲି
ମୋ ମନର ଯେତେ ପ୍ରେମ, ଯେତେ ତୃଷା
ଯେ ଯାହାର ଜଳଗଲେ ବହୁରୂପୀ
ପ୍ରଜାପତି ହୋଇ
ତୁମର ମେହେନ୍ଦି କରା ଦେହ ଆଉ
ଏକାକୀ ମନରେ ।

(ସାମ୍ପ୍ରତିକ ଉମା ଶଙ୍କର ପଣ୍ଡା)

ଖାଲି ଏତିକି ନୁହେଁ, ଓଡ଼ିଆ କବିତାରେ ପ୍ରକାଶ ପାଇଲା ପୁଣି ଅସ୍ତିତ୍ୱ ବାଦର ଦର୍ଶନ । ଫ୍ରାନ୍‌ସ ଓ ଜର୍ମାନୀରେ ପ୍ରବର୍ତ୍ତିତ ଏହି ଦାର୍ଶନିକ ମତବାଦଟି ପ୍ରକୃତରେ କିନ୍ତୁ ଦାର୍ଶନିକ ମାନଙ୍କ ଅପେକ୍ଷା ସାହିତ୍ୟିକ ମାନଙ୍କୁ ଅଧିକତର ଭାବେ ପ୍ରଭାବିତ କଲା । ପ୍ରଥମ ବିଶ୍ୱ ଯୁଦ୍ଧର ଧ୍ୱଂସଲୀଳା, ଅର୍ଥନୈତିକ ଓ ରାଜନୈତିକ ବିଶୃଙ୍ଖଳା, ଅସଂଖ୍ୟ ପ୍ରାଣହାନି, ନୈତିକ ଜୀବନର ଅଧୋଗତି ପ୍ରଭୃତି ଏହାର ପରିଣାମ ସ୍ୱରୂପ ଦୁଃଖ, ଶୋକ, ନୈରାଶ୍ୟ ଓ ଶୂନ୍ୟତା ବୋଧର ଚିତ୍ର ଅସ୍ତିତ୍ୱବାଦୀ କବିମାନଙ୍କର ସୃଷ୍ଟିରେ ରୂପାୟିତ ହେଲା । ହେବା ମଧ୍ୟ ସ୍ୱାଭାବିକ । କାରଣ ପ୍ରତ୍ୟେକ କବି ତା ସମୟର ସର୍ବଶ୍ରେଷ୍ଠ ଭାଷ୍ୟକାର । ତେଣୁ ତା ସମୟର ଏ ବୈକଳ୍ୟ ତାର କବିତାରେ ପ୍ରକାଶ ପାଇବା ସ୍ୱାଭାବିକ । ଜୀବନର ଏ ପରାଜୟ ଓ ଭୟ କାତରତାର ଚିତ୍ର କବି ରାଉତରାୟଙ୍କ ମାଟିଆବୁରୁଜର ଜହ୍ନ କବିତାରେ ଦେଖିଲେ ମଣିଷର ଏ ଶୋଚନୀୟ ଅଧଃପତନ ପାଇଁ ମନରେ ଭୟର୍ହି ସୃଷ୍ଟି ହୋଇଥାଏ ।

ଆଧୁନିକ ବିଜ୍ଞାନ ଦେଶ ଦେଶ ମଧ୍ୟରେ ଥିବା ଦୂରତ୍ୱକୁ ବହୁ ପରିମାଣରେ ସଂକୁଚିତ କରିଦେଇଛି । ଫଳରେ ଗୋଟାଏ ଦେଶର ଜ୍ଞାନରାଜ୍ୟରେ ଦେଖା ଦେଇଥିବା ନୂତନ ତଥ୍ୟ ଓ ତତ୍ତ୍ୱ ବିଜ୍ଞାନର ଚମତ୍କାର ବିଜ୍ଞାପନ କୌଶଳ ଯୋଗୁଁ ଆଉ ଗୋଟିଏ ଦେଶରେ ପହଞ୍ଚିବାକୁ ଯେପରି ବିଶେଷ ସମୟ ନେଇ ନାହିଁ । ସେହିପରି କଳା ସାହିତ୍ୟ କ୍ଷେତ୍ରରେ ତାର ପ୍ରୟୋଗ ପରୀକ୍ଷା ପାଇଁ ଲେଖକ କଳାକାର ମାନଙ୍କୁ ମଧ୍ୟ ବିଶେଷ କଷ୍ଟ ହେଉ ନାହିଁ ଭାବ ସଂକ୍ରମଣର ଏ ପ୍ରକ୍ରିୟା ଏପରି ସୁଦୂର ପ୍ରସାରୀ ହୋଇ ଉଠିଛି ଯାହା ଫଳରେ ସେଥିରୁ ଅଲାହିଦା ହୋଇ ରହିବା ଓଡ଼ିଆ କବିତା ପକ୍ଷରେ ସମ୍ଭବ ହୋଇ ପାରିନାହିଁ । ସମ୍ଭବ ହେବା ସମୀଚୀନ ମଧ୍ୟ ନୁହେଁ । କାରଣ କୌଣସି ସାହିତ୍ୟ ଏକ ସ୍ଥିର ବିନ୍ଦୁରେ ଅଟକି ରହିବା ତାର ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ ମଧ୍ୟ ଉଚିତ ନୁହେଁ । ସମୟର ପ୍ରଭାବରୁ ନିଜକୁ ମୁକ୍ତ ରଖିବା ବ୍ୟକ୍ତି-ମଣିଷ ପକ୍ଷରେ ଯେପରି କଷ୍ଟ ସାଧ୍ୟ ବା ସୃଷ୍ଟିତାର ସାହିତ୍ୟ ଓ କଳା ପକ୍ଷରେ ମଧ୍ୟ ସେହିପରି କଷ୍ଟସାଧ୍ୟ । ସାହିତ୍ୟରେ ଏ ସଂକ୍ରମଣ ଅନିବାର୍ଯ୍ୟ । ତାର ପରିଣତିରେ କବିତାର ସ୍ୱର ଭିନ୍ନ ହେବାକୁ ବାଧ୍ୟ । ଏହି ସ୍ୱର ଏହି ଚେତନା ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ବହୁ ସ୍ଥଳରେ ଲକ୍ଷଣୀୟ । ଏପରିକି ଜଗନ୍ନାଥ ଚେତନାରେ ସୁଦ୍ଧା ଏ ଭାବରେ ପ୍ରତିଫଳନ ଦ୍ରଷ୍ଟବ୍ୟ । ଓଡ଼ିଆ ଜାତିର ଚିରଆରାଧ୍ୟ ଓ ଓଡ଼ିଆସଂସ୍କୃତିର ମୂଳପିଣ୍ଡ ଶ୍ରୀ ଜଗନ୍ନାଥ କାଳେ କାଳେ କବିର ଲେଖନୀକୁ ମୁଖର କରି ଆସିଛନ୍ତି । କିନ୍ତୁ ଆମ ପ୍ରାଚୀନ କବି ମାନଙ୍କ ଧାରଣା ଓ ବିଶ୍ୱାସ ଆଧୁନିକ କବିତାରେ ମିଳିବା ସମ୍ଭବ ନୁହେଁ । ତେଥିପାଇଁ ଆଧୁନିକ କବିର ଲେଖନୀରେ ଜଗନ୍ନାଥ ଚେତନା ବହୁବିଧ ରୂପରେ ପ୍ରକାଶ ପାଇଛି । ଶ୍ରୀ ଜଗନ୍ନାଥ ଏକ ଚିର ରହସ୍ୟମୟ ଦେବତା । ତାଙ୍କର ସୃଷ୍ଟି ଉତ୍ସ ତଥାପି ଅନୁମାନ ଓ ଅନ୍ୱେଷା ନିର୍ଭର ଆଉ ଏ ଯୁଗର କବିର କବିତାରେ ସେହି ଚିନ୍ତାର ଘଟିଛି ସାର୍ଥକ ପ୍ରକାଶ ।

ଭବର ଆକାଶେ ପ୍ରଭୁ ତୁମେ
ଏକ ଇନ୍ଦ୍ର ନୀଳ ଝିଉ ।

ଅନ୍ଧାରର ନିର୍ଜନ ମନରେ ତୁମେ ପୁଣି
ପ୍ରଣିଳ ପାହାଡ଼ ।
ମଣିଷ ଖୋଲଇ ପ୍ରଭୁ ରହସ୍ୟ
ତୁମର ଯେବେ
ପାଏନାହିଁ କିଛୁ ଆବରଣ
ଶେଷହୀନ ଜିଜ୍ଞାସାର ଧୂସର ମରୁରେ
ତୁମେ ଏକ ସବୁଜ ଜଗତ

(ବଳରାମ ଦାସ—ଆଶ୍ଚର୍ଯ୍ୟ ଆକାଶ)

କେବଳ ସେତିକି ନୁହେଁ, ଜଗନ୍ନାଥ ଚେତନା ଭିତରେ କବିଙ୍କର ମୃତ୍ୟୁ ମଧ୍ୟଦେଇ କାଳାତୀତ ଅମୃତ ଚେତନା ମଧ୍ୟ ପ୍ରକାଶ ପାଇଛି କବି ସୀତାକାନ୍ତଙ୍କ କବିତାରେ । ଜଗନ୍ନାଥଙ୍କୁ ପରମ ଆତ୍ମୀୟ ପରି ସେ ପଚାରିଛନ୍ତି ।

"ତମେ ମଧ୍ୟ ସମୁଦ୍ରର ହାଓ୍ୱା ଠାରୁ
ଆପଣାକୁ ଦୂରରେ ରଖିତ
କି ଲୀଳା ହେ ମହାବାହୁ !
ମାଡେଁଶ୍ୱ ତମର ସତେ
କେଡ଼େ ଦମ୍ଭ କେତେ ଯେ ବଧୀର
ସ୍ତବ୍ଧ ଅଜ ଉଗ୍ର
ସମୁଦ୍ରର ଏଡ଼େବଡ଼ ଫାଟିତୁଣ୍ଡ
ଡାକହାକ ସବୁ ସେଠି ସତେ ଅପହଞ୍ଚ ।"

ପ୍ରଶ୍ନ ମଧ୍ୟ କରନ୍ତି କବି ମୃତ୍ୟୁଞ୍ଜୟ ନାରାୟଣ ବଳ ।

"ତଥାପି ଅବୁଝା ହୋଇ ମୁଁ
ତମେ ପ୍ରଭୁ ପୁନଶ୍ଚ ଡାକେ ଦେଖା ଦିଅ

କଥା କହ ଓ ବୁଝାଇ ମୋତେ
କେଉଁ ପର ଅଣାକାଉ ବ୍ରହ୍ମନେଇ
ତମେ ମୋତେ କରିଲ ଫଗୁର ।"

(ଜଣାଣ)

ମୋଟ ଉପରେ ଦେଖିବାକୁ ଗଲେ ଆଧୁନିକ କବିତାରେ ଧର୍ମ ଓ ଦର୍ଶନର ପ୍ରଭାବ ଅପ୍ରଚୁର ନୁହେଁ, ମାତ୍ର ଆଧୁନିକ ଯୁଗରେ ମଣିଷ ମନର ନାନା ସନ୍ଦେହ ଓ ପ୍ରଶ୍ନବାଚୀ । ଈଶ୍ବର ଓ ଧର୍ମ ବିଶ୍ବାସ ନେଇ ତା ମନରେ ଦ୍ୱିଧାବୋଧ ସବୁକିଛିକୁ ସେ ତାର ସାହିତ୍ୟରେ ପ୍ରକାଶ କରିବାକୁ ପ୍ରୟାସୀ । ତାର କବିତାର ତାର ଏହି ପ୍ରୟାସର ଚନ୍ଦନ ଶିଳ୍ପରୂପ ।

ଆଧୁନିକ କବିତାରେ ଆଧ୍ୟାତ୍ମିକ ଆସ୍ଥା ପ୍ରବଳ ହେଲେହେଁ ସେଥିରେ ଆନ୍ତରିକତାର ଅଭାବ ବେଶି ପରିଲକ୍ଷିତ । ସମାଜରେ ଧର୍ମ ସ୍ଥାନରେ ଧର୍ମଭ୍ରମ —ଧର୍ମ ସମ୍ବନ୍ଧରେ ନିବିଡ଼ ଅନୁଭୂତିର ଅଭାବ ଧର୍ମ ଜୀବନ ସହିତ ପୂଜାପଦ୍ଧତି ଓ ଉଗ୍ରବାଦର ଆଚରଣ ସ୍ପଷ୍ଟ ଧର୍ମ ଜୀବନ ସହିତ କର୍ମଜୀବନର ସମନ୍ୱୟ ନାହିଁ । କବିମାନେ କେବଳ ପୌରାଣିକ ଉପାଖ୍ୟାନକୁ ଉପଜୀବ୍ୟ କରି ଧର୍ମ ଭାବର ସଙ୍କେତ ପ୍ରଦାନ କରୁଛନ୍ତି ମାତ୍ର । କେତେବେଳେ ଅବା କବିମାନେ ବେଦନାସିକ୍ତ ହୃଦୟର ଅଭିବ୍ୟକ୍ତି ମାଧ୍ୟମରେ ଈଶ୍ୱରାର୍ପଣର ନିଦର୍ଶନ ଦେବାକୁ ବ୍ୟାକୁଳ । ତେଣୁ କବି ଗୁରୁପ୍ରସାଦ ଅନ୍ତର ଉବାଚ କବିତାରେ କହୁଛନ୍ତି ।

ମହାପ୍ରଭୁ ମୁକ୍ତିଦାଅ ଏଥି
ଯାହା ଶୁଭ ହେଉ ତୁମର ଦୟାରୁ
ଏହି ଯାହା ହେଉ ମୋର ଶେଷଯାତ୍ରା
ଏ ଦେହରୁ
ତୁମର ସଂହାର ତେଉଁ ବହୁତ
ବହୁତ କ୍ଳାନ୍ତ ; ପୁନରୁକ୍ତ
ଏ ଆତ୍ମାର

ଆଉ ତୁମ ଦୟା କ୍ଷମା କରୁଣାର
ସମୁଦ୍ର କୂଳରୁ ।"

ସେହିପରି କବି ଚିନ୍ତାମଣି ବେହେରା ଈଶ୍ବରଙ୍କ ପାଇଁ ଗୋଟିଏ ଶ୍ଳୋକ ଲେଖି ତାଙ୍କର ସେହି ସନ୍ଦେହ ଓ ଆତ୍ମ ସମର୍ପଣର ଭାବନାକୁ ସଂକେତିତ କରିଛନ୍ତି—

"ହେ ସ୍ରଷ୍ଟା
ଏହି ଜଗତର ସୃଷ୍ଟି କି ତୁମର
ଏଇ ସୃଷ୍ଟି ତୁମର କି ଖିଆଲର ?
କାହିଁ ତୁମକୁ ତ ମୁଁ ଦେଖେନି
ପ୍ରାତ୍ୟହିକ ଜୀବନର ଦୈନ୍ୟ
ଯନ୍ତ୍ରମାନ ଜୀବନର ମରୁ ବୁକୁରେ
ତୁମକୁ ତ ମୁଁ ପାଏନି ?

ତୃତୀୟ ଚକ୍ଷୁ –

ସେହିପରି ବୈଶୁଧର ରଚିତ ପିଙ୍ଗଳାର ସୂର୍ଯ୍ୟ କବିତାରେ କହୁଛନ୍ତି ।

"ହେ ମୋର ଆତ୍ମସ୍ଥ ପ୍ରିୟ ହେ
ପରମ ହେ ଅନାଦି
ପ୍ରୀତିକର ମୋର
ହେ ଛନ୍ଦ ଐଶ୍ବର୍ଯ୍ୟ ମୋର
ତୁମେ ମୋର ମୂର୍ତ୍ତିମନ୍ତ
ଯେତେ ମୋର ଆତ୍ମଶୂନ୍ୟ
କାଳଶୂନ୍ୟ ଦେହଶୂନ୍ୟ ସବୁ
ପୂର୍ଣ୍ଣକର ଚିରନ୍ତନ ପ୍ରଣୟର
ଆତ୍ମାନନ୍ଦ ଉତ୍ସବ ଆହ୍ଲାଦେ

ଅଜସ୍ର ଶକ୍ତିର ଅନୁସନ୍ଧାନ ଓ ଆଉ ଏକ ଈଶ୍ୱରାର୍ପଣ ସୁନ୍ଦର ପ୍ରକାଶ ଚନ୍ଦ୍ରାମଣି ବେହେରାଙ୍କ ମୃତ୍ୟୁ ପୂର୍ବରୁ ଗୋଟିଏ ପ୍ରାର୍ଥନା ଶୀର୍ଷକ କବିତାରେ ଦେଖିବାକୁ ମିଳେ ।

ପୀଡ଼ିତ ଜୀବନ ମୋର
　　　　　　ଏ ମୁହୂର୍ତ୍ତେ ମରିବାକୁ ଚାହେଁ
ମରିବାକୁ ଚାହେଁ ମୁହିଁ
　　　　　　ହେ ଈଶ୍ୱର ତୁମ ପାଦତଳେ
ତୁମେ ଯଦି ଆତ୍ମା ମୋର
　　　　　　ବଞ୍ଚାଇବ ଯାଦୁକରୀ ହାତେ
କଳା କୁହୁକର ବଳେ
　　　　　　କରିବନି କୁଣ୍ଠା କେବେ ତଳେ
ଦେହ ମନ ଅର୍ପିଦେବି ।

ସେହିପରି କବି ରମାକାନ୍ତ ରଥ 'ବାଦଶିକାର'ରେ ଈଶ୍ୱର ପ୍ରାପ୍ତି ପାଇଁ ପ୍ରୟାସ ଥିଲେ ମଧ୍ୟ ମନରେ ସନ୍ଦିଗ୍ଧତା । ତେଣୁ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ପାରୁ ନାହାନ୍ତି ।

ମୁଁ ହାସ୍ୟ ମୋହର କ୍ଷିପ୍ର
　　　　　　ଖଣ୍ଡ ଖଣ୍ଡ ସ୍ଥୋଟ ଆଖି ଯୋଗୁ
ତାକୁ ଦେଖି ପାରିବନି ଆଜୀବନ
　　　　　　　　　　ଅପେକ୍ଷା ଉତ୍ସେ
ବାଦମଧ୍ୟ ଦେଖିବନି ମୋତେ
　　　　　　ଯେଣୁ କେଉଁ ଧ୍ୱଂସର ଗ୍ରୀଷ୍ମରେ
ଲୋକାରଣ୍ୟ ହାସପାତାଳରେ
　　　　　　ଶୋଇଥିବ ଅସମର୍ଥ ହୋଇ
ଆଉଥରେ ମିଶିବାକୁ ସେ ଦେହରେ
　　　　　　ଯାହାକୁ ମୁଁ ହେ ଯୁବତୀ ମାନେ
ତୁମର ସଙ୍ଗରେ ଆଜ
　　　　　　ଜଙ୍ଗଲରେ ଦେଇଛୁ ହଜାଇ

ଅଥବା ଅଷ୍ଟପଦୀରେ କବି ସୀତାକାନ୍ତ ମଧ୍ୟ ଅନୁରୂପ ଭାବରେ ନିଦର୍ଶନ ଦେଇଛନ୍ତି

"ହେ ଅନାଦି ଶ୍ୟାମଘନ
ଆଜି ତୋର ପାଇଁ
ଦେହ ମନ ହୃଦୟ ଓ ଆତ୍ମାର
ନଦୀର ଶେଷେ
ରୌଦ୍ରଜାଳ ନିପୀଡ଼ିତ ସମୟର
ପଥ ଶେଷେ
ସୀମିତ ଅପୂର୍ଣ୍ଣ ଛନ୍ଦ କୁବ୍ଜ
ପ୍ରାଣ ମରୁ ଶେଷେ
ସ୍ୱପ୍ନ କ୍ଷମା କୁବୁଜାଙ୍କ ଦେହ
ମନ ହୃଦୟ ମଣ୍ଡାଇ
ବସିଅଛୁ ପଥ ତୋର ଚାହିଁ ।"

କିନ୍ତୁ ଏସବୁ ସତ୍ତ୍ୱେ ଆଧୁନିକ କବିତା ପାଠକ ପ୍ରାଣରେ ଧର୍ମ ଭାବର ପ୍ରଭାବ ପକାଇବାରେ ଅସମର୍ଥ । ଏ କବିତା ସାଧାରଣ ପାଠକ ପାଇଁ ଏକ ଅପରିଚ୍ଛନ୍ନ ଅଳଙ୍କାର ଭାଷା ହୋଇ ରହିଛି । ଆଧୁନିକ କବିତା ନିଃସନ୍ଦେହରେ ଏ ଯୁଗର ଏ କାଳର କବିତା ସମୟର ଫସଲ । କିନ୍ତୁ ଗୋଟାଏ କଥା ଏଠାରେ ସ୍ମର୍ତ୍ତବ୍ୟ ଯେ ସାହିତ୍ୟ କେବଳ ସମୟ ଦ୍ୱାରା ପ୍ରଭାବିତ ହୁଏ ନାହିଁ ତାହା ସମୟକୁ ମଧ୍ୟ ପ୍ରଭାବିତ କରେ ।

ସାହିତ୍ୟ ଯେତେବେଳେ ସମୟ ଦ୍ୱାରା ପ୍ରଭାବିତ ହୁଏ ସେତେବେଳେ ହୁଏ "ସତ୍ୟ"ର ପ୍ରକାଶ ଓ ଯେତେବେଳେ ସାହିତ୍ୟ ସମୟକୁ ପ୍ରଭାବିତ କରେ ସେତେବେଳେ ହୁଏ "ଶକ୍ତି"ର ପ୍ରକାଶ ସାହିତ୍ୟ ସତ୍ୟ ଓ ଶକ୍ତିର ସମନ୍ୱୟ । ଅଙ୍କେସ୍ତୁ ଏକ ଶକ୍ତିର ଅନ୍ୱେଷଣରେ ବିସ୍ମୟାଭିଭୂତ ଏ ଯୁଗର କବି ସଦା ଆଗ୍ରହୀ । ସାହିତ୍ୟିକର ନିଷ୍ଠା ଆନ୍ତରିକତା ଓ ସତ୍ୟାନୁରକ୍ତି ତାଙ୍କୁ ଶାନ୍ତିକର୍ଷୀ ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା ଯୋଗାଇ ଥାଏ । ଆଧୁନିକ ଓଡ଼ିଆ କବି ସଚ୍ଚିଦାନନ୍ଦ, ଅନନ୍ତ, ରମାକାନ୍ତ

ସୀତାକାନ୍ତ, ଜଗନ୍ନାଥ ପ୍ରସାଦ, ଚନ୍ଦ୍ରାମଣି, ସୌଭାଗ୍ୟ କୁମାର ପ୍ରଭୃତିଙ୍କ ରଚନାରେ ଅଳ୍ପ ବହୁତ ଏହିପରି ଧର୍ମ ଦର୍ଶନର ପ୍ରଭାବ ଲକ୍ଷ୍ୟ କରା-ଯାଇଥାଏ । ମାତ୍ର ଅନେକ ଆଧୁନିକ କବି ଯେପରି ଅନୁକରଣ ଓ ଆହରଣ ସର୍ବସ୍ୱ ହୋଇ ଉଠିଛନ୍ତି ସେଥିରେ କବି ଓ କବିତା ଭିତରେ ସୁଦୀର୍ଘ ବ୍ୟବଧାନ ସୃଷ୍ଟି ହୋଇଯାଉଛି । ସେପରି ସ୍ଥଳେ 'ପାଠକ' ଦୂରେଇ ଯିବାରେ ବିସ୍ମିତ ହେବାରେ କିଛି ନାହିଁ । ସତେକି ଏ ସାହିତ୍ୟ ଆଜି ଫେସନ ସର୍ବସ୍ୱ ହେବାକୁ ଯାଉଛି । ସାହିତ୍ୟର ଶବ୍ଦଚର୍ଯ୍ୟା ପ୍ରଚୁର ଭାବରେ ପରିଲକ୍ଷିତ । ମାତ୍ର ତାର ଅକଳଙ୍କ ଆତ୍ମାର ସମ୍ବାଦ ପାଠକ ପାଖରେ ପହଞ୍ଚିବା ପାଇଁ କାହାର ସେପରି ଆନ୍ତରିକତା ନାହିଁ, ନିଷ୍ଠାବି ନାହିଁ, କବିତାର ଆତ୍ମ-ପକ୍ଷ ସମର୍ଥନ ଅପେକ୍ଷା କବିର ଆତ୍ମ-ପକ୍ଷ ସମର୍ଥନ ହୋଇଛି କବିତାର ଶ୍ରେଷ୍ଠ ଇସ୍ତାହାର । କବିତାରେ ଧର୍ମ ଓ ଦର୍ଶନର ତତ୍ତ୍ୱକୁ ଯଦି ନିଷ୍ଠାର ସହିତ ପ୍ରକାଶ କରାଯାଇ ପାରନ୍ତା ତାହା ହେଲେ କବିତା ପାଠକ ପାଖରେ ଅତିଶୀଘ୍ର ପହଞ୍ଚି ପାରନ୍ତା ।

ପୂର୍ବ କାଳରେ ସାହିତ୍ୟିକ କାବ୍ୟକୁ ବଞ୍ଚାଇବା ପାଇଁ ସାହିତ୍ୟିକ ବା କବିକୁ ଆତ୍ମୋତ୍ସର୍ଗ କରିବାକୁ ପଡୁଥିଲା । ଦାରିଦ୍ର୍ୟର କଷାଘାତ, ସାମାଜିକ ନିର୍ଯ୍ୟାତନା ଓ ରାଜ-ରୋଷର ପ୍ରତିକ୍ରିୟା । ତଥାପି ସେ ଯୁଗର କବି ସୃଷ୍ଟି ତପସ୍ୟାରେ ଥିଲା ନିମଗ୍ନ । ସେ ଦିନ ସାହିତ୍ୟକୁ ବଞ୍ଚାଇବା ପାଇଁ ସାହିତ୍ୟିକ ନିଜକୁ ଉତ୍ସର୍ଗ କରୁଥିଲା ବେଳେ ଆଜି ସାହିତ୍ୟକୁ ବଞ୍ଚାଇବା ପାଇଁ ସାହିତ୍ୟିକକୁ ଆତ୍ମୋତ୍ସର୍ଗ କରିବାକୁ ପଡୁଛି । କିଏ ତାହା ହେଲେ ବଞ୍ଚିବ ? ସାହିତ୍ୟ ନା ସାହିତ୍ୟିକ, କବି ନା ତାର କାବ୍ୟ ? ବସ୍ତୁତଃ ଏହା ଏକ ସୁଦୂର ପ୍ରସାରୀ ପ୍ରଶ୍ନ । ଏ ପ୍ରଶ୍ନର ଯଥାର୍ଥ ଉତ୍ତର ସ୍ଥିର କରି ନପାରିଲେ ଆମେ ଏ ପ୍ରକାର ବାଟ ଭୁଲିବା ଯଦୁବଂଶ ଧ୍ୱଂସ ହେବା ପାଇଁ ଆଉ ବିଳମ୍ବ ନାହିଁ । ତେଣୁ ପାଠକର ମନରେ ବିଶ୍ୱାସ ଆସ୍ଥା ଧର୍ମ ଭାବ ଭରି ଦେବା ପାଇଁ କବିତାର ସାଧନା ଅବ୍ୟାହତ ରହିବ, ତା ନହେଲେ କିଏ ଆଜି ଧର୍ମ ଦର୍ଶନର ବ୍ୟାଖ୍ୟା ମଧ୍ୟରେ ମଣିଷ ମନକୁ ସଂଯତ କରିବ ? କବିତାର ଏହି ସ୍ୱେଚ୍ଛାକୃତ ଦାୟିତ୍ୱକୁ ଯଥାର୍ଥ ଭାବରେ ସଂପାଦନ କରି ନପାରିଲେ କବି କେବେ

ହେଲେ ବଞ୍ଚି ପାରିବ ନାହିଁ । ଜଗନ୍ନାଥଙ୍କ ନାଳ ଓଠରେ ବଡ଼ ଖଣ୍ଡେ ଧରେଇ ଦେଇ ତାଙ୍କୁ କଳା କରିବାର ହବା ସ୍ୱପ୍ନ ଦେଖୁଥିବ କବି । ଜଗନ୍ନାଥଙ୍କ ଓଠ ନାଳର ଆହୁରି ନାଳ ହେଉଥିବ । ଏ ବାର୍ତ୍ତା କେବେ ହେଲେ ଉତ୍ତରବେଙ୍ଗ ପାଖରେ ପହଞ୍ଚି ପାରିବ ନାହିଁ । ମଣିଷର ଧର୍ମ-ଦର୍ଶନ ବୋଧ ତା ଜୀବନକୁ ହେନେ କରିଥିଲା ନିୟନ୍ତ୍ରିତ । ସେଇ ଧାରା ସେହି ବିଶ୍ୱାସ ସକଳ ହତାଶା ମଧ୍ୟରେ ତାଙ୍କୁ ଦେଇଥିଲା ବଞ୍ଚିବାର ଖୋରାକ । ପାର୍ଥିବ ପ୍ରତିକୂଳତାର ଊର୍ଦ୍ଧ୍ୱକୁ ଉଠିବାର ଶକ୍ତି । ସେହି ଶକ୍ତି ମଧ୍ୟ ସାହିତ୍ୟ ଭିତରେ ପ୍ରକାଶ ପାଇଁ ସାହିତ୍ୟକୁ କରିଥିଲା ଅପାର୍ଥିବ ପରମ ସମ୍ପଦରେ ପରିଣତ । ଆଜି ସମସ୍ତ ଆସିଛୁ । ଏଥିପାଇଁ ଆମକୁ ଅତି ଗୁରୁତର ଭାବରେ ଚିନ୍ତା କରିବାକୁ ପଡ଼ିବ । ସବୁ ପ୍ରତିକୂଳ ପରିସ୍ଥିତି ଭିତରେ ମଣିଷ ଯେ ବଂଚିଛି ଓ ଭବିଷ୍ୟତରେ ବଞ୍ଚିବ ଏ ଆସ୍ଥା ମଣିଷ ମନରେ ପୁନଃ ପ୍ରତିଷ୍ଠା କରିବାକୁ ହେବ । ମଣିଷ ଉପ-ଲବ୍ଧି କରିବ ଆନନ୍ଦ ବେଦନା, ପାପ ପୁଣ୍ୟ, ଜୀବନ ମୁଦ୍ରାର ଦୁଇଟି ପାର୍ଶ୍ୱ । ଆନନ୍ଦ ପରି ବେଦନା ମଧ୍ୟ ସତ୍ୟ ବରଂ ଅଧିକ ଭାବରେ ସତ୍ୟ । ଆଧୁନିକ କବିତାରେ ପ୍ରକାଶିତ ଧର୍ମ-ଦର୍ଶନର ଭିତ୍ତି ପାଠକ ମନରେ ଏଇ ଧାରଣାକୁ ବଂଚାଇ ପାରିବାରେହିଁ ତାର ସାର୍ଥକତା ଲାଭ କରିବ । ତାନହେଲେ କବିତା ପାଠକ ସହିତ ତଥାପି ବଂଚିବାର ତାର ସୌହାର୍ଦ୍ଦ୍ୟ ସମ୍ପଦଟିକୁ ଯେ ହରାଇ ବସିବ ଏଥିରେ ସନ୍ଦେହ କରିବାରେ କୌଣସି କାରଣ ନାହିଁ ।

ମାତ୍ର ଆନ୍ତର୍ଜାତିକ କ୍ଷେତ୍ରରେ ବିଭିନ୍ନ କାବ୍ୟ କବିତାରେ ବାହ୍ୟତଃ ଈଶ୍ୱରଙ୍କ ପ୍ରତି ବିଶ୍ୱାସହୀନତା ପ୍ରକାଶ ପାଇଥିଲେ ମଧ୍ୟ ଏହା ଲକ୍ଷଣୀୟ ଯେ କବିର ମନୁଷ୍ୟ ଜୀବନ ପ୍ରତି ଆସ୍ଥା ଓ ଅନୁରାଗ ପ୍ରକାଶ ପାଉଛି । ତାହାହିଁ ତାଙ୍କୁ ପ୍ରେରଣା ଦେଉଛି ସୃଷ୍ଟି କରିବାରେ । ଅନ୍ୟ ହାତରେ ବିଜ୍ଞାନ ମଧ୍ୟ ରହସ୍ୟ ପରେ ରହସ୍ୟ ଉଦ୍‌ଘାଟନ କରି ତାଙ୍କୁ ବିଶ୍ଳେଷଣ କରି ଦେଖିବାକୁ ଯାଇ ଏପରିକି ଏକ ଅବସ୍ଥାରେ ଉପନୀତ ହେଉଛି ଯାହା ଫଳରେ ପ୍ରାକୃତିକ ଜଗତରେ ସେ ଆହୁରି ବେଶୀ ବିସ୍ମୟକର ରହସ୍ୟର ସମ୍ମୁଖୀନ ହେଉଛି । ମନୁଷ୍ୟ ପ୍ରକୃତିକୁ ବିଜୟ କରିବାକୁ ଯାଇ ପ୍ରକୃତିକୁ ନିୟନ୍ତ୍ରଣ କରି ନପାରି ପରାଭବ ସ୍ୱୀକାର

କରୁଛି । ତେଣୁ ତାହାର ସଂକଳ୍ପ ଓ ନୈରାଶ୍ୟ ଏହି ଦୁଇର ସମ୍ମିଶ୍ରଣଜ ସ୍ୱର ପ୍ରତ୍ୟେକ ଦେଶର ଉଚ୍ଚକୋଟୀର କବି ମାନଙ୍କ ସୃଷ୍ଟିରେ ସ୍ଫୁରିତ ହେଉଛି । କାଳକୁ ଅତିକ୍ରମ କରିବା ପାଇଁ ଆଧୁନିକ କବିର ସଂକଳ୍ପ ମାତ୍ର ସେହି ସଙ୍କଳ୍ପରେ ପହଞ୍ଚିବା ପାଇଁ ଦୁଇଟି ମାଧ୍ୟମର ଆଶ୍ରୟ ନେଇଛନ୍ତି, ଗୋଟିଏ ପ୍ରେମ ଓ ଅପରଟି ଈଶ୍ୱର ବିଶ୍ୱାସ । ମାତ୍ର ଏହି ପ୍ରେମ ଓ ଈଶ୍ୱର ବିଶ୍ୱାସ ଉପରେ ମଧ୍ୟ ସନ୍ଦେହ ଓ ଆଶଙ୍କାର ଯୁଗପତ୍ ଆବିର୍ଭାବ ହେବାରୁ ଧର୍ମ ଭାବର ସୁସ୍ପଷ୍ଟ ଧାରଣା ଅପେ ପାଇ ପାରୁ ନାହିଁ ।

---

ମୁଖ୍ୟ ଅଧ୍ୟାପକ
ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଅଧ୍ୟାପକ କାହ୍ନୁଚରଣ ମିଶ୍ର

# ଆଧୁନିକ ଓଡିଆ କାବ୍ୟ ସାହିତ୍ୟରେ ବିଜ୍ଞାନର ପ୍ରଭାବ

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀ ଶେଷ ଭାଗରୁ ଇଉରୋପରେ ଆଧୁନିକ ବିଜ୍ଞାନର ଜୟଯାତ୍ରା ଆରମ୍ଭ ହେଲା—ଆରମ୍ଭ ହେଲା ଯାନ୍ତ୍ରିକତା ଓ ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି । ତାହାର ଫଳଶ୍ରୁତି ଅଷ୍ଟାଦଶ ଶତାବ୍ଦୀ ଶେଷ ଭାଗରେ ସଂଘଟିତ ବିଲାତର ଶିଳ୍ପ-ବିପ୍ଳବ । ଶାନ୍ତ କାନ୍ତ କାବ୍ୟ କାନନରେ ଷ୍ଟିମ୍ ଇଞ୍ଜିନ୍‌ର ଧୂମ କୁଣ୍ଡଳୀ—କଳ କାରଖାନାର ବିକଟ ଶବ୍ଦ ଏବଂ ଗରମ ହାଓ୍ୱା । ଏହି ପରିସ୍ଥିତିରେ କବିତାର ଫୁଲ ଫୁଟିବା କି ସହଜ କଥା ? ଏକଦା ମେଡ଼ିକାଲ୍ ଛାତ୍ର ଥିଲେ ମଧ୍ୟ କବି ଜନ୍ କିଟସ୍ ( ୧୭୯୫-୧୮୨୧ ) ଖାଇବା ଟେବୁଲ୍ ଉପରେ ବୈଜ୍ଞାନିକଙ୍କ ବିପକ୍ଷରେ ଏହିପରି ଏକ ଅପ୍ରୀତିକର 'ଟୋଷ୍ଟ୍' ( Toast ) କାମନା କରିଥିଲେ—"Confusion to the memory of Sir Isaac Newton, who destroyed the Poetry of rainbow by reducing it to a Prism." କେବଳ କବି କିଟସ୍ ନୁହନ୍ତି, ତାଙ୍କର ସମକାଳୀନ କବି ଉଇଲିୟମ୍ ବ୍ଲେକ୍ ( ୧୭୫୭—୧୮୨୭ ) ଏବଂ ପରବର୍ତ୍ତୀ କାଳର କବି ଡ଼ବ୍ଲ୍ୟୁ : ବି : ଇଟସ୍ ( ୧୮୬୫—୧୯୩୯ ) ଟି: ଏସ୍: ଏଲିୟଟ ( ୧୮୮୮—୧୯୬୫ ) ପ୍ରମୁଖ ମଧ୍ୟ ବିଜ୍ଞାନକୁ ପ୍ରଥମେ ପ୍ରଥମେ ସୁନଜରରେ ଦେଖି ନଥିବାର ଜଣାପଡେ । ଏହାର କାରଣ ସୁସ୍ପଷ୍ଟ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଗ୍ରଗତି, କବି ମାନଙ୍କର ଚିରାଚରିତ ଜୀବନ ଦର୍ଶନ, ଗତାନୁଗତିକ ସୌନ୍ଦର୍ଯ୍ୟ ବୋଧ ଏବଂ ପାରମ୍ପରିକ ଧର୍ମ ବିଶ୍ୱାସ ଉପରେ ଆଞ୍ଚ ଆଣିଲା । କୋପରନିକସ୍ ( ୧୪୭୩—୧୫୪୩ ), ଗାଲିଲିଓ ( ୧୫୬୪—୧୬୪୨ ), ନିଉଟନ୍ ( ୧୬୪୨—୧୭୨୭ ), ଡ଼ାରଉଇନ୍ ( ୧୮୦୯—୮୨ ), ଫ୍ରଏଡ଼୍ ( ୧୮୫୬ – ୧୯୩୯ ) ପ୍ରମୁଖ ବୈଜ୍ଞାନିକଙ୍କର ନୂଆ ନୂଆ ଆବିଷ୍କାର ଓ

ଉଦ୍ଭାବନ କବି ମାନଙ୍କର ପ୍ରଥାବଦ୍ଧ, ଐତିହ୍ୟଶାସିତ ଚିନ୍ତା-ଚେତନାକୁ ଆଘାତ କଲା—ସେମାନଙ୍କର ବଦ୍ଧମୂଳ ଧ୍ୟାନ-ଧାରଣାକୁ ଦୋହଲାଇବାରେ ଲାଗିଲା । କବିମାନେ ନିଜ ନିଜ କଳ୍ପଲୋକରେ ବା ଗଜଦନ୍ତ ମିନାର୍‌ରେ ସ୍ୱପ୍ନ ବିଳାସରେ ମଗ୍ନ ରହିବା ଆଉ ସୁବିଧାଜନକ ହେଲା ନାହିଁ । ବିଜ୍ଞାନର ଭୌତିକ ଆଭିମୁଖ୍ୟ ଏବଂ କାବ୍ୟ ସାହିତ୍ୟର ଭାବବାଦୀ ବା ଆଦର୍ଶବାଦୀ ଅଭିମୁଖ୍ୟ ମଧ୍ୟରେ ସମବାୟ ରକ୍ଷା କରିବା କଷ୍ଟକର ମନେ ହେଲା ।

ଯାଦୁ ବିଦ୍ୟା ଓ ଧର୍ମୀୟ କର୍ମ କାଣ୍ଡରୁ କାବ୍ୟ କବିତାର ଉଦ୍ଭବ ହୋଇଛି ବୋଲି ପଣ୍ଡିତ ମାନଙ୍କର ମତ । ସଭ୍ୟତାର ଉଷା କାଳରେ ପ୍ରକୃତିର ବିଚିତ୍ର ଲୀଳା ମଣିଷ ନିକଟରେ ଥିଲା ଦୁର୍ବୋଧ୍ୟ । ବଜ୍ର, ବିଦ୍ୟୁତ୍, ଜଳ ପ୍ଳାବନ, ଭୂମିକମ୍ପ, ଅଗ୍ନି ବିତ୍ପାତ ଆଦି ଦେଖି ମଣିଷ ନିଜକୁ ଅସହାୟ ମନେ କରୁଥିଲା । ତେଣୁ ନିଜର ସୁରକ୍ଷା ଓ ନିରାପତ୍ତା ପାଇଁ ସେ ଯାଦୁବିଦ୍ୟା ସୃଷ୍ଟି କରିଥିଲା—ଧର୍ମ ଓ ଈଶ୍ୱର-ବିଶ୍ୱାସ ପ୍ରବର୍ତ୍ତନ କରିଥିଲା । ବିଜ୍ଞାନ, ପରେ ପରେ ସେହି ଲୀଳାମୟୀ ପ୍ରକୃତିର ରହସ୍ୟ ଉନ୍ମୋଚନ କଲା – ପ୍ରାକୃତିକ ଶକ୍ତିକୁ ନିଜର କରାୟତ୍ତ କଲା । ତେଣୁ ଯାଦୁବିଦ୍ୟା ଓ ଧର୍ମ ବିଶ୍ୱାସ ବିଜ୍ଞାନର ଏକପ୍ରକାର ଶତ୍ରୁ ହୋଇ ଉଠିଲା । ଯାଦୁବିଦ୍ୟା ଓ ଧର୍ମ ବିଶ୍ୱାସରୁ ଉଦ୍ଭୂତ କାବ୍ୟ କବିତା, ବିଶ୍ୱ-ପ୍ରକୃତିର ଯେଉଁ ବ୍ୟକ୍ତିନିଷ୍ଠ, ଭାବପ୍ରବଣ ବ୍ୟାଖ୍ୟା କରି ଆସୁଥିଲା, ବିଜ୍ଞାନ ତାହାକୁ ପ୍ରତ୍ୟାଖ୍ୟାନ କଲା । କବିଙ୍କ କଳ୍ପଲୋକର ଧଳାଗାର କଳାଗାର ଉଭୟ ବୈଜ୍ଞାନିକ ଉପଯୁକ୍ତ ପର୍ଯ୍ୟବେକ୍ଷଣ, ପରୀକ୍ଷାନିରୀକ୍ଷା ଓ ଅନୁସିଦ୍ଧାନ୍ତର ଖଣ୍ଡାଧାରରେ ବାଟ ଭୁଲିଲା । ସୁତରାଂ ବିଜ୍ଞାନ ଯୁଗରେ କାବ୍ୟ କବିତାର ସୃଷ୍ଟି ବା ଚର୍ଚ୍ଚା ପାଇଁ ଅନୁକୂଳ ପରିବେଶ ନଥିବାର ମନେ କରି କବିମାନେ ଉନ୍ନାସିକତା ପ୍ରକାଶ କରିବା ହିଁ ସ୍ୱାଭାବିକ ।

କିନ୍ତୁ ସୁଖର କଥା, ଚଳିତ ବିଂଶ ଶତାବ୍ଦୀ ବେଳକୁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ପ୍ରତି କବି ମାନଙ୍କର ଦୃଷ୍ଟିକୋଣ କ୍ରମଶଃ ପରିବର୍ତ୍ତିତ ହେଲା । ମଣିଷର ଦୈନନ୍ଦିନ ଜୀବନ-ଯାପନରେ ବିଜ୍ଞାନ ଏକ ଅତ୍ୟାବଶ୍ୟକ ଅଙ୍ଗ ହୋଇ ପଡ଼ିଲା । ବିଜ୍ଞାନକୁ ବାଦ୍ ଦେଇ ସଂସ୍କୃତିର ପରିକଳ୍ପନା ଏବେ ଆଉ କରାଯାଇ ପାରେନା ବୋଲି ଗୁରିଆଡେ

ଅନୁଭୂତ ହେଲା । ରବୀନ୍ଦ୍ରନାଥ ଠାକୁର ( ୧୮୬୧ – ୧୯୪୧ ), ବର୍ଟ୍ରାଣ୍ଡ୍ ରସେଲ୍ ( ୧୮୭୨ – ୧୯୭୦ ) ପ୍ରମୁଖ ମନୀଷୀଗଣ ବିଜ୍ଞାନର ଜୟଯାତ୍ରାକୁ ସ୍ୱାଗତ ଅଭିନନ୍ଦନ ଜଣାଇଲେ । ରବୀନ୍ଦ୍ରନାଥ ଘୋଷଣା କଲେ – "ପାଶ୍ଚାତ୍ୟ ଏକ ଐଶ୍ୱର୍ଯ୍ୟମୟ ଉପହାର ଆମ ପାଖରେ ଆଣି ପହଞ୍ଚାଇଛି; ତାହା ହେଉଛି ବିଜ୍ଞାନ । ସେହି ବିଜ୍ଞାନରେ ପ୍ରାଚ୍ୟ ଅବଶ୍ୟ ସମସାମର୍ଥ୍ୟ ଅର୍ଜନ କରିବ ।" ଏକଦା ବିଜ୍ଞାନ— ସଂଜାତ ଭୌତିକ ପରିବେଶରେ ଅସ୍ୱସ୍ତି ଅନୁଭବ କରୁଥିବା କବି ଏଲିୟଟ୍ ପ୍ରକାଶ କଲେ – "The rhythm of modern Poetry is fashioned the internal-Combustion engine"

ଆମ ଦେଶର କଥା କିନ୍ତୁ ସ୍ୱତନ୍ତ୍ର । ପ୍ରାଚୀନ ବିଜ୍ଞାନରେ ଆମେ ଏକଦା ସନ୍ତୋଷଜନକ ଅଗ୍ରଗତି କରିଥିଲେ ହେଁ ମଧ୍ୟ ଯୁଗରେ ଆମ ବିଜ୍ଞାନ-ସାଧନାରେ ଭଟ୍ଟା ପଡ଼ି ଯାଇଥିଲା । ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟ ଭୂଖଣ୍ଡରୁ ଆଧୁନିକ ବିଜ୍ଞାନର ସ୍ପର୍ଶ ପାଇ ଆମର ବୈଷୟିକ ତଥା ସାଂସ୍କୃତିକ କ୍ଷେତ୍ରରେ କ୍ରମେ ପରିବର୍ତ୍ତନ ସଂଘଟିତ ହେଲା—ଧୀରେ ଧୀରେ ଆମ ଚିନ୍ତା ଚେତନା ଓ ଧ୍ୟାନ ଧାରଣାରେ ରୂପାନ୍ତର ସାଧିତ ହେଲା । ଆମ ନିଜ ରାଜ୍ୟରେ ପ୍ରଥମେ ବିଦେଶୀ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ଚେଷ୍ଟାରେ ହିଁ ଆଧୁନିକ ବିଜ୍ଞାନର ବାର୍ତ୍ତା ପ୍ରସାର ଲାଭ କରିଥିଲା । ( ୧୮୩୨—୪୩ ) ମସିହା ମଧ୍ୟରେ ରେଭରେଣ୍ଡ ଅମସ୍ ସଟନ୍ ( ୧୮୦୧—୧୮୬୪ ) ସ୍କୁଲ ପାଠ୍ୟ ପୁସ୍ତକ ଭାବରେ 'ପଦାର୍ଥ ବିଦ୍ୟାସାର' ସଂକଳନ ପୂର୍ବକ ତିନି ଖଣ୍ଡରେ ପ୍ରକାଶ କରିଥିଲେ । ଏହି ଗ୍ରନ୍ଥରେ ସଟନ୍ ସାହେବ ଗୁରୁ-ଶିଷ୍ୟଙ୍କ କଥୋପକଥନ ଭଙ୍ଗୀରେ "ଭୂଗୋଳ ଜ୍ୟୋତିଷ ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦିର ବିବରଣ" ପ୍ରଦାନ କରିଥିଲେ । ଏହାହିଁ ଏ ରାଜ୍ୟରେ ଆଧୁନିକ ବିଜ୍ଞାନ ଚର୍ଚ୍ଚାର ପ୍ରାରମ୍ଭିକ ଉଦ୍ୟମ । ପରେ ପରେ ପାଶ୍ଚାତ୍ୟ ଶିକ୍ଷାଦୀକ୍ଷା ପ୍ରସାର ଫଳରେ ଆମର ଜାତୀୟ ଜୀବନରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରଭାବ କ୍ରମଶଃ ବଢ଼ିବାରେ ଲାଗିଲା । ପାଶ୍ଚାତ୍ୟ ଦେଶମାନଙ୍କ ପରି ଆମ ଦେଶର ଜୀବନ ଚର୍ଯ୍ୟାରେ ବିଜ୍ଞାନ ଏକ ପ୍ରକାର ଅଙ୍ଗୀଭୂତ ହୋଇଗଲା । ଆମର କେତେକ କବି ବିଜ୍ଞାନର ଏହି ଉପଯୋଗିତା ହୃଦୟଙ୍ଗମ କରି ସ୍ୱତଃସ୍ଫୂର୍ତ୍ତ ଭାବରେ ତାହାର ଜୟଗାନ କରିବାରେ ଲାଗିଲେ । କବି ମଧୁସୂଦନ ରାଓ ( ୧୮୫୩ – ୧୯୧୨ ) 'ନବଯୁଗର ଅଭିଷେକ'ରେ ଘୋଷଣା କଲେ –

ଜଗତର ସିଂହ ଦୁଆରେ    ଜ୍ଞାନ ଅର୍ଣ୍ଣବ ତୀରେ
ବିଜ୍ଞାନର ରତ୍ନବେଦିକା    ଦେଖ ରାଜେ ରୁଚିରେ ।
ତହିଁ ସିଂହାସନ ପୁଣ୍ୟର    ସ୍ୱର୍ଣ୍ଣବର୍ଣ୍ଣେ ରଞ୍ଜିତ
ତହିଁପରେ ବିଜେ ନବୀନ    ଯୁଗ ଚିର ବାଞ୍ଛିତ ।

ପୁଣି ଅନ୍ୟତ୍ର ସେ ପ୍ରକାଶ କଲେ—

ବିଜ୍ଞାନର ମହାଯୁଗ ସମାଗତ ଏ ଧରଣୀ ତଳେ
ଜୟ ବୈଜୟନ୍ତୀ ତାର ଉଡ଼ୁଅଛି ଏ ମହୀମଣ୍ଡଳେ ।
ବିଜ୍ଞାନ ହିଁ ମହାଶକ୍ତି—ବିଜ୍ଞାନ ହିଁ ଅମୋଘ କୁଞ୍ଚିକା
ଫେଡ଼ିବାକୁ ବ୍ରହ୍ମାଣ୍ଡର ଗୂଢ଼ତମ ରହସ୍ୟ-ପେଟିକା ।
ବିଜ୍ଞାନ ଦୁର୍ବଳ କ୍ଷୁଦ୍ର ମାନବର ଶିରେ ଲଲାଟରେ
ସମ୍ରାଟ ମୁକୁଟ ଦିଏ ପିନ୍ଧାଇଣ ମହା ସମାଦରେ ।
—ବାମଣ୍ଡା ରାଜ ପ୍ରଶସ୍ତି ।

ବାମଣ୍ଡାର ରାଜକବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ (୧୮୭୨ — ୧୯୧୭) ଆମର ଆଧୁନିକ ସାହିତ୍ୟରେ ପ୍ରଥମେ ବିଜ୍ଞାନର କାବ୍ୟାୟନ କରିଥିବାର ଦେଖାଯାଏ । ତାଙ୍କର 'ପ୍ରକୃତି', 'ଯୌନ ନିର୍ବାଚନ' ପ୍ରଭୃତି କବିତା ଏହାର ଉଦାହରଣ । ଡାରଉଇନ୍‌ଙ୍କ ବିବର୍ତ୍ତନବାଦ ଏବଂ ପ୍ରାକୃତିକ ଯୌନ ନିର୍ବାଚନ ତତ୍ତ୍ୱ ଏହି କବିତା ଗୁଡ଼ିକରେ ଗର୍ଭିତ ହୋଇଛି । ନୀହାରିକାରୁ ଜଡ଼ ଜଗତ୍ ଓ ଜୀବ ଜଗତ୍‌ର ସୃଷ୍ଟି ତଥା କ୍ରମବିକାଶର ଧାରା ଦର୍ଶାଇ ସଚ୍ଚିଦାନନ୍ଦ ଲେଖିଛନ୍ତି —

ଶକ୍ତି ରୂପେ ପରମାଣୁ ପୁଞ୍ଜେ ପ୍ରକୃତିର,
ପରମାଣୁ ସଙ୍ଗେ ମିଶି ଏ ବିଶ୍ୱ ଶକତି
ଜନ୍ମାଇଲା ନୀହାରିକା ଜ୍ୟୋତିଃପୁଞ୍ଜ ରୂପେ
( ଭ୍ରୂଣାବସ୍ଥା ଯେଣୁ ଏହା ବିଶ୍ୱ ପ୍ରକୃତିର )

× × ×

କ୍ରମ ବିକାଶର ସୂତ୍ରେ ବହୁ ବର୍ଷ ପରେ
ଦେଖିଲୁ ସର୍ବାଗ୍ରେ ଭୂବି ମାନବ ଉଦ୍‌ଭବ ।
— ପ୍ରକୃତି ।

କବି ରାଧାମୋହନ ଗଡ଼ନାୟକ ( ୧୯୧୧— ) ନିଜର 'ରେଡ଼ିଓ', 'ହୀରାକୁଦ ବନ୍ଧ' ପ୍ରଭୃତି କବିତାରେ ସେହିପରି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଚମତ୍କାର କାବ୍ୟାୟନ କରିଥିବାର ଦେଖାଯାଏ । ତାଙ୍କର 'ହୀରାକୁଦ ବନ୍ଧ' କବିତାର କିୟଦଂଶ ଏହିପରି—

ଦେଶସାରା ପଠାଉଛୁ ପଥେ ପଥେ ବନ୍ଧୁତ୍ୱର ଛନ୍ଦ
ସୁହୃଦ୍‌ରେ ହୀରାକୁଦ ବନ୍ଧ ।
ଅନ୍ଧକାରେ ସହଜେ ତୁ ଫୁଟାଉଛୁ ଆଲୋକର ହସ,
ଘରେ ଘରେ ଘୂରାଉଛୁ ମରୁତର ପରଶ-ବିଳାସ,
କାନେ କାନେ ପରଷୁଛୁ ପଲକରେ ଦିଗ୍‌ଦେଶରୁ ଆଣି
ନୃତ୍ୟ ଗୀତ ଆଳାପନ ତରଙ୍ଗିତ ଆକାଶର ବାଣୀ ।

× × ×

ବନ୍ଧୁ ଆରେ ହୀରାକୁଦ ବନ୍ଧ
ଆମ ଏଇ ଉତ୍କଳର ଉର୍ଜସ୍ୱଳ ଆଶାର ଆସ୍ପଦ ।

କିନ୍ତୁ ବିଜ୍ଞାନ ମଣିଷ ସମାଜ ପାଇଁ ଅବିମିଶ୍ର ସୁଖ-ସଂପଦ ଆଣି ଦେଇ ନାହିଁ—ଜନ-ଜୀବନ ପକ୍ଷରେ ବିଜ୍ଞାନ ସବୁବେଳେ ଶୁଭଙ୍କର ବା ମଙ୍ଗଳପ୍ରଦ ହୋଇପାରି ନାହିଁ । ଭଲ ସହିତ ଭେଲ ବି ମିଶି ରହିଛି । ବିଜ୍ଞାନ-ପ୍ରସୂତ ଯାନ୍ତ୍ରିକତା ଏବଂ ଭୌତିକ ପରିବେଶ ମଧ୍ୟରେ ବିଭିନ୍ନ ଇଉରୋପୀୟ କବିମାନଙ୍କ ପରି ଆମର କବିମାନେ ମଧ୍ୟ ସ୍ୱାଚ୍ଛନ୍ଦ୍ୟ ଅନୁଭବ କରି ନାହାନ୍ତି । ଆମର କୃଷି ଓ କୁଟୀର ଶିଳ୍ପ-ଭିତ୍ତିକ ସଭ୍ୟତାରେ ଯନ୍ତ୍ରଶିଳ୍ପର ଜଞ୍ଜାଳ ହୃଦୟଙ୍ଗମ କରି କବି ଗଡ଼ନାୟକ 'ମାଟିର ମଣିଷ'କୁ ଏହିପରି ଆହ୍ୱାନ କରିଛନ୍ତି—

ଯନ୍ତ୍ର ତଳେ ତ ପରାଣ ନାହିଁ ରେ ମରଣର ତହିଁ ଘର
ଧନଗର୍ବ ତହିଁ ଚିତାର କୁହେଳ ହେଉଅଛି ଉତ୍‌ଥଳ ।

ଆଗାମୀ ଯୁଗର ଦ୍ରଷ୍ଟା ମୁଁ ଆଜ ଡ଼ାକୁଅଛୁ ଏଇ କୂଳେ
ପତଙ୍ଗ ପରି ଝାସ ଦେ' ନାହିଁ—ଦେ' ନାହିଁ ତାର ମୂଳେ !

× × ×

ଫେରିଆ ପୂରୁବ ପଥେ
ଅକାଇଣେ ଆଜ ଧୂଆଁ ହ' ନାହିଁ ଯନ୍ତ୍ରଧୂଆଁର ସାଥେ ।
— ମାଟିର ମଣିଷ ।

କବି ବୈକୁଣ୍ଠ ନାଥ ପଟ୍ଟନାୟକ ( ୧୯୦୪-୭୯ ) ସେହି ଉଦ୍ଦେଶ୍ୟରେ ଆପଣା 'ଯନ୍ତ୍ରଯଜ୍ଞ' କବିତାରେ ଆହୁରି ତୀବ୍ର କଣ୍ଠରେ ଗାଇଛନ୍ତି —

ବଡ଼ ଉଦ୍‌ବେଗେ ଧାଇଁ ଆସୁଥିଲ
ହାସପାତାଳରେ ବାପକୁ ଦେଖିବ ବୋଲି,
ବିଜ୍ଞାନ-ଯୁଗେ ଜ୍ଞାନ-ଆଖି ଗଲା ଖୋଲି ।

× × × ×

ବର୍ଷା ଶେଷ କରି ଛୁଟି ପଳାଇଲା ଗାଡ଼ି
ଦୂର ପାଖବାପ ଡାକୁଥିଲ ତାକୁ ଠାରି ।
ଦେଶ ଗୋଟାକ ଶିଳ୍ପ-ପ୍ରସାର ନିଶା
ଦିଅ ମଦ୍ଦୁ ସାଥେ କିଏ ବା ଚେତୁଛି
କେତେ ହଳାହଳ ମିଶା !

× × × ×

ଶିଳ୍ପ ଶିଳ୍ପ ପରମ ସତ୍ୟ ବିଜ୍ଞାନ ଆମ ଟାଣ
ଗଣ ମଙ୍ଗଳ-ହୋମ ଲାଗି ଲୋଡ଼ା କେଇଟା ତୁଚ୍ଛ ପ୍ରାଣ !

× × × ×

ଯନ୍ତ୍ର ବଡ଼ ନା ମଣିଷ ବଡ଼ରେ ସ୍ୱପ୍ନବିଳାସୀ କହ
ଗାଭଡ଼ୀ ନଜାଣି ଅନ୍ଧକ ଚଳାଇଁ ମହାକରୁ ଦୁଃସହ ।

କବି ସଚ୍ଚି ରାଉତରାୟ ( ୧୯୧୬ — ) ସେହିପରି ଯନ୍ତ୍ରଶିଳ୍ପର ହଳାହଳ ମଧ୍ୟରେ ଆପଣା ପୂର୍ଣ୍ଣୋଦ୍ଭୂତ ପ୍ରାଣର ଅସ୍ମିତା ପ୍ରକାଶ କରିଛନ୍ତି—

ଯନ୍ତ୍ରଶାଳା ବଂଶୀ ବାଜେ
ଇଞ୍ଜିନ୍‌ର ଝୁର ଆମନ୍ତ୍ରଣେ
ମାନବର ଶ୍ରମ ହୁଏ ପଣ୍ୟ ପରି ହେଳାରେ ବିକ୍ରୟ !
ହାସ୍ୟରେ ପ୍ରଚ୍ଛନ୍ନ !
ଚୂର୍ଣ୍ଣ ଅଙ୍ଗ କୋଇଲାର ଜ୍ୱଳନ୍ତ ଆକ୍ରୋଶେ
ପୁଣ୍ୟ ମାନବତା ତାର ଦଗ୍‌ଧୀଭୂତ ହାତୁଡ଼ି ପ୍ରହାରେ
—ସହରତଳିର ଉଷା ।

ଦୁଇ ଦୁଇଟି ମହାଯୁଦ୍ଧ କାଳରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଘୋର ଅପପ୍ରୟୋଗ ହେଲା—ବୈଜ୍ଞାନିକ ପଦ୍ଧତିରେ ପ୍ରସ୍ତୁତ ବିଭିନ୍ନ ମାରଣାସ୍ତ୍ର ମାନବ-ସମାଜର ଉଚ୍ଛେଦ ସାଧନ ପାଇଁ ବାହାରି ପଡ଼ିଲା । ପୃଥିବୀର ପ୍ରତିକୂଳ ଭବିଷ୍ୟତ୍ ଚିତ୍ରକୁ ନୟନରେ ଲକ୍ଷ୍ୟ କରି କବିମାନେ ଆତଙ୍କିତ ହୋଇ ଉଠିଲେ; ତଥାପି ମାନବତା ଉପରୁ ଏକାବେଳକେ ବିଶ୍ୱାସ ତୁଟାଇ ପାରିଲେ ନାହିଁ । କବି ରାଉତରାୟଙ୍କ 'ହିଟଲର୍‌ର ଦୁଃସ୍ୱପ୍ନ' କବିତାରେ ତାହାର ଉଜ୍ଜ୍ୱଳ ପ୍ରତିଛବି—

ରକେଟ୍ ହାବେଳି ପୁଣି
ବେତାରରେ ଚାଳିତ ଶକଟ
ମରଣର କାରଖାନା
ବିଷଯନ୍ତ୍ର ସବୁ ହେଲା ନଷ୍ଟ ।
ଯନ୍ତ୍ର ହେଲା ବିସ୍ଫୋରକ, ଗନ୍ଧକର ବାଷ୍ପ ହେଲା ପାଣି
ଲକ୍ଷ ଲୁହ ଝାଳେ ଓଦା ଏ ଗେରୁଆ ମୃତ୍ତିକାର ବାଣୀ ।

ଆଧୁନିକ ବିଜ୍ଞାନ ବିସ୍ତୃତ ବଟବୃକ୍ଷ ପରି ବହୁ ଶାଖା-ପ୍ରଶାଖାରେ ବିଭକ୍ତ । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଗଣିତ, ଉଦ୍ଭିଦ ବିଜ୍ଞାନ, ପ୍ରାଣୀବିଜ୍ଞାନ, ମନୋବିଜ୍ଞାନ, ନୃତତ୍ତ୍ୱ, ଚିକିତ୍ସା ଓ

ଭେଷଜ ବିଜ୍ଞାନ, ଭୂତତ୍ତ୍ୱ, ଜ୍ୟୋତିର୍ବିଜ୍ଞାନ ପ୍ରଭୃତି ଏବେ ଜଡ଼ ଜଗତ୍, ଜୀବ ଜଗତ୍ ତଥା ମହାକାଶ ଜଗତ୍‌ର ନାନା ରହସ୍ୟ ଓ ସ୍ୱରୂପ-ପ୍ରକୃତି ଅନୁସନ୍ଧାନରେ ବ୍ୟସ୍ତ ଓ ଜାଗ୍ରତ । ଅମର ଆଧୁନିକ କବିମାନେ ଉକ୍ତ ବିଷୟରେ ଏହିସବୁ ବିଜ୍ଞାନ-ବିଷୟକ ସାଧାରଣ ଧାରଣା ପୋଷଣ କରି, ଆବଶ୍ୟକ ଅନୁଯାୟୀ ତାହାସବୁ ନିଜ ନିଜ କାବ୍ୟକବିତାରେ ପ୍ରୟୋଗ କରୁଥିବାର ଦେଖାଯାଏ । ପୁଣି କୌଣସି-ନା-କୌଣସି ବିଜ୍ଞାନ ବିଷୟ ଅଧ୍ୟୟନ ବା ଚର୍ଚ୍ଚା କରିଥିବା ବ୍ୟକ୍ତି ଏବେ କାବ୍ୟ-ସାଧନା ଚଳାଇଥିବା ଆନନ୍ଦର କଥା । ଆମର ସାଂପ୍ରତିକ କବି-ମଣ୍ଡଳୀରେ କେତେକ ଡାକ୍ତର, ଇଞ୍ଜିନିୟର୍, ମନୋବିଜ୍ଞାନୀ, ପଦାର୍ଥ ବିଜ୍ଞାନୀ ପ୍ରମୁଖ ରହିଛନ୍ତି । ମୋଟାମୋଟି ଆମର ବହୁ କବି ଏବେ ବିଜ୍ଞାନ-ସଚେତନ । ଏହି ବିଜ୍ଞାନ ସଚେତନତା ଆଧୁନିକ କାବ୍ୟ-ସାହିତ୍ୟକୁ ନିଃସନ୍ଦେହରେ ଋଦ୍ଧିମନ୍ତ କରିଛି । ବିଜ୍ଞାନ ସଚେତନ ହେବା ଫଳରେ ହିଁ କବି ବୈକୁଣ୍ଠ ନାଥ ପଟ୍ଟନାୟକ ଆମକୁ ଦେଇ ପାରିଛନ୍ତି—'ରାଉରକେଲା', 'ଚିଲ୍କା' ( ଗ୍ରନ୍ଥାବଳୀ-୨ୟ ଭାଗ ) ଭଳି କେତେକ କବିତା ; କବି ସଚ୍ଚି ରାଉତରାୟଙ୍କ ଲେଖାରୁ ଆମେ ପାଇଛୁ —'ବୋମାରୁ', 'ହ୍ୱିଟଲର୍' (ପାଣ୍ଡୁଲିପି),'କୋଣାର୍କ' (ସ୍ୱଗତ), 'ଏୟାର୍‌ପୋର୍ଟ ନିଉୟର୍କ' ( କବିତା ୧୯୬୨ ) ପ୍ରଭୃତି କବିତା । ବିଜ୍ଞାନସଚେତନତା ଥିବାରୁ ହିଁ କବି କୁଞ୍ଜବିହାରୀ ଦାଶ ( ୧୯୧୪— ) ଲେଖିଛନ୍ତି 'ଯାଯାବର', କବି ନିତ୍ୟାନନ୍ଦ ମହାପାତ୍ର (୧୯୧୨—) ରଚନା କରିଛନ୍ତି 'ମୁଁ ଏକ ଉଲ୍କାଟ ସୃଷ୍ଟି', କବି ପ୍ରତିଭା ଶତପଥୀ ( ୧୯୪୫— ) ଲେଖିଛନ୍ତି 'ସାବିତ୍ରୀ ଉବାଚ', କବି ରମାକାନ୍ତ ରଥ (୧୯୩୪—) ରଚନା କରିଛନ୍ତି 'ବିମାନ ଦୁର୍ଘଟଣାରେ ମୃତ୍ୟୁ', କବି ହରିହର ମିଶ୍ର (୧୯୪୦ —) ଲେଖିଛନ୍ତି 'ସ୍କାଇଲାବ୍' ପ୍ରଭୃତି କବିତା ।

ଆଧୁନିକ କବିତାରେ ମନୋବିଜ୍ଞାନର ବିଭିନ୍ନ ତଥ୍ୟ ଓ ତତ୍ତ୍ୱର ବ୍ୟବହାର ଏକ ଉଲ୍ଲେଖଯୋଗ୍ୟ ଘଟଣା । ଇଦ୍, ଇଗୋ, ସୁପର୍-ଇଗୋ ଭେଦରେ ମଣିଷ ମନର ସ୍ତର-ବିଭାଗ ଏବଂ ତହିଁରେ ଲିବିଡୋର ବିଚିତ୍ର ଲୀଳା, ଅର୍କିଟାଇପ୍ ବା ରେସିଆଲ୍ ମେମୋରି, ଇଡିପସ୍ ଓ ଏଲେକ୍‌ଟ୍ରା କଂପ୍ଲେକ୍ସ, ଆତ୍ମରତି ବା ନାର୍ସିସିଜମ୍ ପ୍ରଭୃତି ବିଭିନ୍ନ

ମନୋବୈଜ୍ଞାନିକ ତଥ୍ୟ ଏବେ ଆମର କାବ୍ୟ ସାହିତ୍ୟରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ରୂପାୟିତ ହେଉଥିବାର ଦେଖାଯାଏ । କବି ସଚି ରାଉତରାୟ ଆପଣା 'ଶୀତ' ( ସ୍ୱଗତ ) କବିତାରେ ନାରସିସ୍ଟ ପ୍ରବଣତାକୁ ଏହିପରି ସୁନ୍ଦର ଭଙ୍ଗୀରେ ବ୍ୟକ୍ତ କରିଛନ୍ତି—

ମୁଁ ଆଇନାରେ ଦେଖୁଥିଲି ନିଜକୁ
ରଙ୍ଗହୀନ ସିଗାରେଟ୍ ପରି ସାଦା ନ ହେଲେ ବି
ନୁହେଁ କଳୁ ଯେମିତି ବର୍ମା ଚୁରୁଟ୍ ।
ଲମ୍ବା ସାଢେ ପାଞ୍ଚ ଫୁଟ୍
ବ୍ୟାଳିଶ ଇଞ୍ଚ ଛାତିର ଓସାର ।

× × ×

ଆଇନା ସାମନାରେ ଛିଡ଼ା ହୋଇ
ନିଜକୁ ଦେଖୁଥିଲି—ନିଜକୁଇ ।
ବେଳେ ବେଳେ ମୁଗ୍ଧ ବି ହେଉଥିଲି
ନାର୍ସିସସ୍ ପରି ।
ଛାତିର ଓସାର ବ୍ୟାଳିଶ ଇଞ୍ଚ୍ ।

କବି ବିନୋଦ ଚନ୍ଦ୍ର ନାୟକ ( ୧୯୧୯— ) ଲିବିଡୋର ଶକ୍ତିଶାଳୀ ପ୍ରଭାବ ବେଶ୍ କଳାତ୍ମକ କରି ଦର୍ଶାଇଛନ୍ତି ନିଜର 'ସର୍ଗସ୍ୱପ୍ନ' କବିତାରେ—

ଉପରେ ଇଠାବୃକ୍ଷର ପରିଣତ ଶାଖା
ତଳେ ସାଜ ମାଟିର ମାଳ ଆସ୍ତରଣ,
ଏଇ ପରିସ୍ଥିତି ମଧ୍ୟେ
ଆଦମ ସର୍ଗସ୍ୱପ୍ନର ସାନ୍ନିଧ୍ୟ କ୍ଷୁଧା ନେଇ
ପରସ୍ପରର ପରିଚୟ ହେଲା ।
ତୁମ ନଗ୍ନ ସ୍ୱାସ୍ଥ୍ୟର ସ୍ୱାଦ ନବିଡ଼ ତୁମର
ମସୃଣ ଉଗ୍ରତା

ଦେଇଥିଲ ଗଣ୍ଡାରତା ଆଜ ପରିତୃପ୍ତି ।
ନିଷ୍ପେଷିତ କାମନା ଏ ଚନ୍ଦ୍ରିକାଟି ସଖି
ବୋଧ କଲି ଆଦ୍ୟଥର ପାଇଁ
ଲଘୁ ପୃଷ୍ଠ ଆଜ ଚନ୍ଦନ
ଉପରେ ସଫେଦ ଜହ୍ନ ଅତି ପରିଚ୍ଛନ୍ନ ।

× × ×

ପ୍ରାଗୈତିହାସିକ ଯୁଗସ୍ତରର ଯୌନ ପ୍ରକାଶ ଆକାଙ୍କ୍ଷା
ଆଜ ଅନୁଭବ କରେଁ
ନିଜ ମେରୁଦଣ୍ଡ ତଳେ,
ଆଜ ଖୋଜ ବୁଲେଁ
ତୁମ ନଗ୍ନ ଆଭରଣ ହୀନ ଅଙ୍ଗ
ଚରୁ ତଳେ ନଦୀ କୂଳେ
ସେଇ ନଗ୍ନ ସ୍ୱାସ୍ଥ୍ୟବତୀ ଅଙ୍ଗ
ତାହାରେ ମୁଁ କରେଁ ନମସ୍କାର
ସେଇ ପୃଷ୍ଠ ସେଇ ଚନ୍ଦନ
ଉପରେ ସଫେଦ ଜହ୍ନ ଅତି ପରିଚ୍ଛନ୍ନ ।

କବି ଶ୍ରୀନିବାସ ଉଦ୍‌ଗାତା ( ୧୯୩୫— ) ଧେଇଁପର ନିଜର 'ଅନ୍ତଃସ୍ୱର' କବିତାରେ ଇଦ୍ ଓ ସୁପର୍-ଇଗୋର କଥା ସ୍ପଷ୍ଟ ଭାବରେ ବ୍ୟକ୍ତ କରିଛନ୍ତି—

କହିଲ କଥାଟି କେତେ ମିଠା ଶୁଭେ ନାହିଁ ?
କେତେ ଚକ୍‌କଣ ମନେ ହେଉ ନାହିଁ ଉଦରର ପ୍ରସାଧନ ?
ହେଲେ ଭିତର ମଣିଷଟି ?
ଆଜ ତାର ଗୋପନ ମନ !
ବାହାର ଭିତରର ଏ ଦୁଇ ବିନ୍ଦୁ
ବେଳେ ବେଳେ ଏକାଠି ହେଲେ

ସବୁ ପୁରୁଷକାର ଓ କ୍ଲୀବତ୍ୱ ଏକାକାର ହୋଇଯାଏ,
ସେ ଅବସ୍ଥାଟି କହାନ୍ତ ଦୟନୀୟ ।

ଆଧୁନିକ କାବ୍ୟ ସାହିତ୍ୟର ଆଙ୍ଗିକ କ୍ଷେତ୍ରରେ ମଧ୍ୟ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରଭାବ ପରିଲକ୍ଷିତ ହୁଏ । ବିଜ୍ଞାନ-ଜଗତ୍‌ରୁ ବିଭିନ୍ନ ଉପମା, ରୂପକ, ପ୍ରତୀକ, ଚିତ୍ରକଳ୍ପ ଆଦି ଗ୍ରହଣ କରିବାରେ ଆମର କବିମାନେ କୁଣ୍ଠା ପ୍ରକାଶ କରି ନାହାନ୍ତି । କବି ଅନନ୍ତ ପଟ୍ଟନାୟକ ( ୧୯୧୦ – ) 'ବାରୁଦର ଜ୍ୟୋତ୍ସ୍ନା', 'ଉଦ୍‌ଯାନ ଉତ୍ସବ' ( ଶୃଙ୍ଖଳ ମୁଁ ଶୃଙ୍ଖଳ—କବିତା ), 'ଅଣୁ ଗର୍ଭରେ ଜନିମୁ ନିମିଷେ ଜୀବନ ଅଭିଜ୍ଞାନ' ( ନିଜ ବନ୍ଦନା ପଢେଁ— କବିତା – କବି ସଚ୍ଚି-ଦାନନ୍ଦ ରାଉତରାୟ 'ହେ ଇସ୍ପାତ ପୁଷ୍ପକର ମାଲୀ' ( ପାଣ୍ଡୁଲିପି ), 'ମୋ ସ୍ମୃତିର ନାନା ଫଟୋଗ୍ରାଫ୍', ହୃଦୟର ଉଲ୍‌କାମାଳ ପ୍ରତିଟି ପେନସିଲ୍, ( କବିତା—୧୯୬୨ ) – କବି ଉମାଶଙ୍କର ପଣ୍ଡା ( ୧୯୩୧— ) 'ସାଇରେନ୍ ମୃତ୍ୟୁର ଆତଙ୍କ', 'ମର୍ଫିଅର ନିଶାଘେରା ନଦ' ( ରିତୁ ଓ ଓ ତାର ପ୍ରେମିକମାନେ )— କବି ସୀତାକାନ୍ତ ମହାପାତ୍ର ( ୧୯୩୭ —) 'ଆଖିର ଆଲବମ୍', 'ସ୍ନାୟୁ ସିନ୍ଦୁକ' ( ଶବାୟୁ ମୁହୂର୍ତ୍ତ—କବିତା ) —କବି ରବୀନ୍ଦ୍ର ନାଥ ସିଂହ ( ୧୯୩୨— ) 'ଏ ପୃଥିବୀ ଲୌହଗର୍ଭା' 'ଗର୍ଜେ ମୋ ମେସିନ ଗନ୍ ବିପ୍ଳବର ଗର୍ଭ ବେଦନାରେ' ( ଭଗୀରଥ – କବିତା )— କବି କୈଳାସ ଲେଙ୍କା ( ୧୯୪୨—) 'ବେଳେ ବେଳେ ମୃତ୍ୟୁ ମଧ୍ୟ ନିୟମର ବହିର୍ଭୂତ ନିଉଟ୍ରନ୍ ପ୍ରୋଟନ୍ ପରି' ( ମୃତ୍ୟୁ ମୋର କଅଁଳା ବାଛୁରୀ—କବିତା ) ପ୍ରଭୃତି ଉକ୍ତିମାନ ବ୍ୟବହାର କରି କବିତାର ଆଙ୍ଗିକରେ ବୈଚିତ୍ର୍ୟ ଓ ନୂତନ ସ୍ୱାଦ ଆଣି ଦେଇଛନ୍ତି । ଏପରିକି କବି ତାରିଣୀ ଚରଣ ଦାସ ( ୧୯୨୯ – ) ରଚନା କରିଛନ୍ତି —କେତେକ 'ଗାଣିତିକ କବିତା', ଯାହାର ଦୃଶ୍ୟ ମର୍ଯ୍ୟାଦା ଅସ୍ୱୀକାର କରି ହେବ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ—

$$\frac{(\text{ଅନୁକରଣ})^2 - (\text{ମୌଳିକତା})}{\text{ହନୁକରଣ}} = \frac{\text{ସାହିତ୍ୟ}}{\text{କଲିକତା}}$$ ।

— କବିତା ୧୯୧୯ ।

ଏହି ନୂତନ ଗାଣିତିକ ଶୈଳୀର ରଚନା ଆମର ପାରଂପରିକ ଚିତ୍ର କବିତା କିଂବା ପାଶ୍ଚାତ୍ୟ 'କଂକ୍ରିଟ୍ ପୋଏଟ୍ରି' କଥା ସ୍ମରଣ କରାଇ ଦିଏ ।

ଆଧୁନିକ କାବ୍ୟ ସାହିତ୍ୟରେ ବହୁଳ ଭାବରେ ଅନୁସୃତ ଗଦ୍ୟ ଛନ୍ଦ ବିଜ୍ଞାନ-ଯୁଗୀୟ ପରୋକ୍ଷ ପ୍ରଭାବର ଫଳ ବୋଲି କହିଲେ, ଅତ୍ୟୁକ୍ତି ହେବ ନାହିଁ । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରସାର ଫଳରେ ମଣିଷର ଜୀବନ ଯାପନ ପ୍ରଣାଳୀ ଏବଂ ତତ୍ସଂପୃକ୍ତ ଚିନ୍ତା ଓ ଅନୁଭୂତିରେ ପରିବର୍ତ୍ତନ ଆସିଛି । ଫଳରେ କବି ମାନଙ୍କ ପ୍ରକାଶଭଙ୍ଗୀର ଗତାନୁ-ଗତିକ ବ୍ୟାକରଣ ବହୁକ୍ଷେତ୍ରରେ ଅଦରକାରୀ ହୋଇ ପଡ଼ିଛି । ତେଣୁ ନିଜର କେତେକ ବିଶେଷ ବିଶେଷ ଅନୁଭୂତି ଓ ଭାବାବେଗ କବିମାନେ ପାରଂପରିକ ପଦ୍ୟଛନ୍ଦରେ ପ୍ରକାଶ କରିବା ପାଇଁ ସୁବିଧାଜନକ ମନେ କରୁ ନାହାନ୍ତି । ଉଦାହରଣ ସ୍ୱରୂପ— କବି ଦୀପକ ମିଶ୍ରଙ୍କର (୧୯୩୯— ) 'ଆହ୍ଲାଦ ଶୀତ' କବିତା କିମ୍ବା କବି ସୌଭାଗ୍ୟ କୁମାର ମିଶ୍ରଙ୍କର (୧୯୪୧ – ) 'ଘର' କବିତାର ଭାବ ପ୍ରକାଶ ପାଇଁ ଗଦ୍ୟ ଛନ୍ଦ ହିଁ ଉପଯୁକ୍ତ; ପଦ୍ୟଛନ୍ଦରେ ସେହି ନିର୍ଦ୍ଦିଷ୍ଟ ଭାବ ଯଥାଯଥ ପ୍ରକାଶ କରିବା କଷ୍ଟକର –

ଘରଟା ତ ଆଜି କାକର ଟୋପାଏ ନୁହଁ ଯେ
ସୂର୍ଯ୍ୟ ଉଇଁଲେ ଆକାଶରେ ଉଭାନ୍ ହୋଇଯିବ ।
ଘର ଘର-ହୋଇ ରହିଯାଏ, କଳ ଚିପୁଡ଼ି
ଶେଷ ମାଠିଆକ ପାଣି ଆଣୁଥିବା ସ୍ତ୍ରୀ ଲୋକ
ଛୁଆ ଜନ୍ମ କରୁଥାଏ ଓ ଝିଣ୍ଡ ପଡ଼ୁଥିବା ଇଟାରେ
କୁକୁର ତାର ଦେହ ଘସୁଥାଏ ଖରା ବେଳ ଯାକ ।
ପୁଲିସ୍ ବାଲା ବୁଲିଗଲେ ପୋଷ୍ଟ୍‌ମ୍ୟାନ୍ ଫେରିଟାଏ ବୁଲିଯାଏ ।

—ଘର ।

ଶେଷରେ, କାବ୍ୟ ସାହିତ୍ୟର ସଙ୍ଗଠନ କ୍ଷେତ୍ରରେ ଅର୍ଥାତ୍ କାବ୍ୟ କବିତାର ପ୍ରଚ୍ଛଦ ଓ ପ୍ରସାର ଦିଗରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ସହାୟତା କଥା ସୂଚାଇ ଏ ଆଲୋଚନାର ଉପସଂହାର କରେଁ । ବିଜ୍ଞାନ-

ପ୍ରସୂତ ମୁଦ୍ରଣ ଶିଳ୍ପ ଏବେ ସ୍ୱଳ୍ପ ସମୟ ମଧ୍ୟରେ କାବ୍ୟ କବିତାକୁ ଲକ୍ଷ ଲକ୍ଷ ସଂଖ୍ୟାରେ ମୁଦ୍ରିତ କରାଇ ଅଗଣିତ ପାଠକ-ପାଠିକାଙ୍କ ନିକଟରେ ପହଞ୍ଚାଇ ଦେଇ ପାରୁଛି । ଟେପ୍-ରେକର୍ଡିଂ, ଏଂପ୍ଲିଫାୟାର୍, ଗ୍ରାମୋଫୋନ୍, ରେଡ଼ିଓ, ଟେଲିଭିଜନ୍, ପ୍ରଭୃତି ଜରିଆରେ କବି-ମାନଙ୍କର କଣ୍ଠସ୍ୱର ଦେଶ-କାଳର ସୀମା ଅତିକ୍ରମ କରି ପ୍ରସାର ଲାଭ କରି ପାରୁଛି । ପ୍ରାଚୀନ କାଳରେ କବି ତଥା କାବ୍ୟ କବିତା ପକ୍ଷରେ ଏହି ବିଜ୍ଞାନ-ଘଟିତ ସୁବିଧା-ସୁଯୋଗ ଲାଭ କରିବା ଥିଲା ସ୍ୱପ୍ନର ବିଷୟ । ଆଧୁନିକ କାବ୍ୟ କବିତା ତେଣୁ ବିଜ୍ଞାନ-ଗୌରବରେ ଗରବିଣୀ । କାବ୍ୟ ସାହିତ୍ୟ ପ୍ରତି ଏବେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଏହି ଶୁଭଦାନ ଆମକୁ ଶ୍ରଦ୍ଧାର ସହ ସ୍ମରଣ ରଖିବାକୁ ହେବ ।

---

କୃଷ୍ଣ ଚରଣ ବେହେରା
୬ । ୪ । ୮୧

ମୁଖ୍ୟ ଅଧ୍ୟାପକ
ଓଡ଼ିଆ ଭାଷା ସାହିତ୍ୟ ବିଭାଗ
ଫୁଲବାଣୀ କଲେଜ,
ଫୁଲବାଣୀ,

# ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଭବିଷ୍ୟତ

ଆଲୋଚନାର ପଥ ସୁଗମ ହେବା ଆଶା କରି ପ୍ରଥମରୁ କେତୋଟି କଥା ସ୍ପଷ୍ଟ କରିଦେବା ଆବଶ୍ୟକ ମନେ କରୁଛି ।

ଗତ କେତେ ବର୍ଷ ମଧ୍ୟରେ ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ହାଇସ୍କୁଲ ଓ କଲେଜ ଛାତ୍ର ଛାତ୍ରୀଙ୍କ ମଧ୍ୟରେ ଅନୁଷ୍ଠିତ କବିତା ପ୍ରତିଯୋଗିତା ମାନଙ୍କର ବିଚାରକ ହେବା ସୁଯୋଗ ଏହି ଲେଖକ ପାଇଥିଲି । ହାଇସ୍କୁଲ ଛାତ୍ର ଛାତ୍ରୀଙ୍କ କଥା ବାଦ ଦିଆଯାଉ । କିନ୍ତୁ କଲେଜ ଛାତ୍ର ଛାତ୍ରୀଙ୍କଠାରୁ ଯେଉଁ ସବୁ କବିତା ଏହି ପ୍ରତିଯୋଗିତା ପାଇଁ ଆସିଥିଲା, ସେ ଗୁଡ଼ିକ ପଢି ମୁଁ ହତାଶ ହୋଇଥିଲି ଯେତେ, ତାହାଠାରୁ ବିସ୍ମିତ ହୋଇଥିଲି ଅଧିକ । ମୋ କ୍ଷୁଦ୍ର ବିଚାରରେ ତାହା ମଧ୍ୟରୁ ଗୋଟିଏ ମଧ୍ୟ ଲେଖା କବିତା ପଦବାଚ୍ୟ ନଥିଲା ।

ଅବଶ୍ୟ ପ୍ରତିଯୋଗିତାର ଆବଶ୍ୟକତା ଦୃଷ୍ଟିରୁ ତାହାଭିତରୁ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନପାଇଁ ମୁଁ ଲେଖା ବାଛିଛି । କିନ୍ତୁ ତତ୍ ସଙ୍ଗେ ସଙ୍ଗେ ଉଦ୍ୟୋକ୍ତା ମାନଙ୍କୁ ମୌଖିକ ଭାବେ ମଧ୍ୟ ଜଣାଇ ଦେଇଛି ଯେ କୌଣସି କବିତା ପୁରସ୍କାର ଯୋଗ୍ୟ ନୁହେଁ ।

ଏ ପରିକି ଉତ୍କଳ ସାହିତ୍ୟ ସଂସଦ ପକ୍ଷରୁ ଅନୁଷ୍ଠିତ କବିତା ପ୍ରତିଯୋଗିତା ମାନଙ୍କରେ ମଧ୍ୟ ଏହି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଛି ।

ସମ୍ପ୍ରତି କେତେ ବର୍ଷ ହେଲା ଓଡ଼ିଆ ଭାଷାରେ ଅସଂଖ୍ୟ ସାହିତ୍ୟ ପତ୍ରିକା ପ୍ରକାଶ ପାଇଛି । ସଂଖ୍ୟା ବଢ଼ି ଚାଲିଛି । ଏହା ଅବଶ୍ୟ ଆମ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏକ ସ୍ୱାଗତ ଯୋଗ୍ୟ ବିଷୟ ।

କିନ୍ତୁ ସେହି ପତ୍ର ପତ୍ରିକା ଗୁଡ଼ିକରେ ପ୍ରକାଶିତ କବିତା ଗୁଡ଼ିକରେ କୌଣସି ନବ ଲେଖକଙ୍କର ପ୍ରତିଶ୍ରୁତିର ସ୍ୱାକ୍ଷର ଦେଖିବାକୁ ମିଳନାହିଁ । ସେମାନଙ୍କ ମଧ୍ୟରେ କାବ୍ୟ ଚେତନାର ଅଭାବ । ଏ ପରିସ୍ଥିତି ଓଡ଼ିଆ ଆଧୁନିକ କାବ୍ୟ ସାହିତ୍ୟର ଭବିଷ୍ୟତ ପାଇଁ ନିଶ୍ଚିତ ଭାବେ ଆଶାର ଲକ୍ଷଣ ନୁହେଁ ।

ପିଲାଦିନୁ ମୋର ଆଧୁନିକ କବିତା ପ୍ରତି ଆଗ୍ରହ । ଅର୍ଥ ବୁଝେ ବା ନ ବୁଝେ, ହାଇସ୍କୁଲରେ ମାତ୍ର ଅଷ୍ଟମ ଶ୍ରେଣୀର ଛାତ୍ର ଥିବା ବେଳେ ( ୧୯୪୫ ) ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ତତ୍‌କାଳୀନ ଆଧୁନିକ କବିତା ଯଥା 'ସୁନାର ମାଛର ଆଖିର ପ୍ରସ୍ରବଣ' ବା ଶ୍ରୀ ବିନୋଦ ନାୟକଙ୍କ 'ମାଡ଼ାଗାସ୍କର ଲବଙ୍ଗ ଯେତେ' ଇତ୍ୟାଦି ମୋର ମୁଖସ୍ଥ ଥିଲା । ତେଣୁ ଏବେ ଯେତେବେଳେ ନୂଆ ପତ୍ରିକାଟିଏ ଦେଖୁଛି, ତାହା ଓଲଟାଇଲେ ପ୍ରଥମେ କବିତା ଉପରେ ମୋର ଆଖି ପଡ଼େ । କିନ୍ତୁ ଅଧିକାଂଶ କବିତାର ପ୍ରଥମ କେତେ ଧାଡ଼ି ପଢ଼ିବା ପରେ ଆଉ ଆଗେଇ ପାରେନାହିଁ । ଯେମିତି କିଏ ଅଙ୍କୁଶ ପ୍ରୟୋଗ କରି ମନ୍ତ୍ର ଅଟକାଇ ଦିଏ ।

ମୋ ଦୁର୍ବୋଧତା ଏଥିର କାରଣ ନୁହେଁ । ସବୁ କବିତା ଯେ ସମସ୍ତଙ୍କ ସୁବୋଧ ହେବ, ଏମିତି କିଛି କଥା ନାହିଁ । କିନ୍ତୁ କୌଣସି କବିତା ପ୍ରତି ଆଗ୍ରହ ସୃଷ୍ଟି କରେ ତାର କାବ୍ୟିକ ଆବେଦନ, ସ୍ୱକୀୟ ମାଧୁର୍ଯ୍ୟ, ଅନ୍ତର୍ନିହିତ ଏକ ବିଭାବ, ମୋ' ଉପରେ ତାହାର ଆତ୍ମା ।

ଓଡ଼ିଆ ଭାଷାରେ ଆଧୁନିକ କାବ୍ୟସାହିତ୍ୟର ଯେ ପ୍ରବର୍ତ୍ତା ଭାବେ ସ୍ୱୀକୃତ, କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ତାଙ୍କ ଭାଷାରେ:—
"ଉତ୍ତୀର୍ଣ୍ଣ ସାହିତ୍ୟ ପାଠ୍ୟ ପୁସ୍ତକ ପରି ଆଦ୍ୟପ୍ରାନ୍ତ ବ୍ୟାଖ୍ୟାର ଅପେକ୍ଷା ରଖିନପାରେ । କିନ୍ତୁ ତାହାର ସାମଗ୍ରିକ ଆବେଦନ ଯେ କୌଣସି ନା କୌଣସି ସ୍ତରରେ ପାଠକ ଚିତ୍ତକୁ ସ୍ପର୍ଶ କରିବ, ଏହି ମୌଳିକ ସତ୍ୟଟିକୁ କିଏ ଏଡ଼ାଇ ଦେବା ସମ୍ଭବ ।"

କବି ଶ୍ରୀ ରାଉତରାୟ ଏହି ଯେଉଁ ସାମଗ୍ରିକ ଆବେଦନ କଥା କହିଛନ୍ତି, ଏବର କବିତା ଗୁଡ଼ିକରେ ସେଥିର ଅଭାବ କବିତା ଗୁଡ଼ିକୁ ପଢ଼ିବା ଓ ସେଥିର ରସାସ୍ୱାଦନ କରିବା ଦିଗରେ ବାଧା ହେଉଛି । କବିର ଅନ୍ତରାତ୍ମାର ପ୍ରକାଶ ଏହା ମଧ୍ୟରେ ମିଳୁ ନାହିଁ । କବିର ଅନ୍ତଃସ୍ୱର ପରିବର୍ତ୍ତେ ଧାରକରା ସ୍ୱର ଅନେକ କବିତାରେ ସ୍ପଷ୍ଟ ।

୧୯୭୨ ରେ କବି ଶ୍ରୀ ରାଉତରାୟ ଯାହା କହିଥିଲେ, ତାହା ଆଠବର୍ଷ ଅତିବାହିତ ହେବା ପରେ ଏବେ ମଧ୍ୟ ସତ୍ୟ ବୋଲି ଅନୁଭୂତ ହୁଏ । ଶ୍ରୀ ରାଉତରାୟ କହିଥିଲେ, "ଅଭିଜ୍ଞତାର କୌଣସି ପୃଷ୍ଠଭୂମି ନଥାଇ, ପୁସ୍ତକ ପାଠ ବା ଅନ୍ୟର ଅନୁଭୂତିକୁ ଆଶ୍ରୟ କରି ଯେଉଁ କବିତାଦ୍ୱାରା କଳ୍ପନାର ଅବତାରଣା କରି ଯାଇଛି, ତାହାହିଁ କବିତାକୁ ମେରୁଦଣ୍ଡହୀନ ସରୀସୃପରେ ପରିଣତ କରନ୍ତେ ବୋଲି ଚିହ୍ନିବା ଗ୍ରାହକ ତଥା ପାଠକ ସମାଜର ଅଭିଯୋଗ । କିନ୍ତୁ ଆଧୁନିକ କବିତା ଏପରି ଧାରକରା ଅନୁଭୂତି ଓ ଆବେଗରେ ଭାରାକ୍ରାନ୍ତ ହେଉଥିବାର ଦେଖା ଯାଉଛି । ଆଧୁନିକ କବିତା ଯେଉଁମାନେ ଲେଖୁଛନ୍ତି, ସେମାନେ ଏଥିପ୍ରତି ସଚେତନ ନ ହେଲେ, କବିତାର ବିପର୍ଯ୍ୟୟ ନିଶ୍ଚିତ ।"

ସେ ଆହୁରି କହିଥିଲେ, "ଓଡ଼ିଶାର ନିଶ୍ଚିତ ମହଲରେ ଆଧୁନିକ ସାହିତ୍ୟ, ବିଶେଷ କରି ଆଧୁନିକ କବିତା ଓ କାବ୍ୟ ଜିଜ୍ଞାସା ସମ୍ପର୍କରେ ନାନା ପ୍ରଶ୍ନ, ସଂଶୟ ଓ ଭ୍ରମଧାରଣା ରହିଛି । ଏ ସବୁ ଦୂରୀଭୂତ ନ ହେବା ଯାଏଁ, କବି ଓ ପାଠକ ମନରେ କ୍ରମେ ବଢି ଉଠୁଥିବା ବ୍ୟବଧାନର ସଂକୋଚନ ଅସମ୍ଭବ । ଖାଲି ଯେ ପାଠକ ମାନେ ଭୁଲ କରୁଛନ୍ତି, ତାହା ନୁହେଁ । ବୁଦ୍ଧିମାନ ଲେଖକ ତଥା ନବାଗତଙ୍କର ବି ନୂତନ କାବ୍ୟ କବିତା ସମ୍ପର୍କରେ କୌଣସି ବିଧିବଦ୍ଧ ଧାରଣା ନାହିଁ । ସେମାନେ ମନେ କରୁଛନ୍ତି, ଯାହା ଲେଖିଦେଲେ ହିଁ ତାହା କବିତା ହୋଇଗଲା । ଏବଂ ଏଥିରେ କେହି ତାଙ୍କୁ ମାର୍ଗ ଦର୍ଶନ ଦେଲେ ବା ତାଙ୍କ ଲେଖାକୁ ଅସ୍ୱୀକାର କଲେ, ସେମାନେ ଭୟଙ୍କର ଅସନ୍ତୁଷ୍ଟ ହୋଇ ଉଠୁଛନ୍ତି ।"

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଭବିଷ୍ୟତ କଥା ଚିନ୍ତା କରିବାକୁ ଯିବାବେଳେ, କବି ଶ୍ରୀ ରାଜତରାୟଙ୍କ ଏହି ମତ ସାଙ୍ଗକୁ ଆଉ କେତେଜଣ ପ୍ରତିଷ୍ଠିତ ସାହିତ୍ୟିକଙ୍କ ମତ ମଧ୍ୟ ବିଚାରକୁ ନିଆଯାଇ ପାରେ ।

ସ୍ୱର୍ଗତ ଅଧ୍ୟାପକ ଗୋଲକ ବିହାରୀ ଧଳ:— ଆଧୁନିକ କବିତାକୁ ପରମ୍ପରା ପ୍ରଚଳିତ ଓଡ଼ିଆ କବିତା ସହିତ ମିଳାଇ ଦେଖିଲେ, ତାର କ୍ରମ ବିବର୍ତ୍ତନ ଆଖିରେ ଦେଖା ପଡ଼େ ନାହିଁ । ହଠାତ୍ ଅନ୍ୟ ଜଳବାୟୁରୁ ଆସି ରୋପିତ ହେଲ ପରି ଜଣା ପଡ଼େ । ପାଶ୍ଚାତ୍ୟ ଜଗତର ବିଜ୍ଞାନ, ଯାନ୍ତ୍ରିକ ସମୃଦ୍ଧି, ମୂଳ ବିଗ୍ରହ, ଶ୍ରେଣୀ ସମ୍ପର୍କ, ଆଧୁନିକ ଜୀବନର ବ୍ୟସ୍ତତାରୁ ସେ ଦେଶର କବିତା ଯେପରି ସ୍ୱତଃ-ସ୍ଫୁର୍ତ୍ତି ଭାବେ ପ୍ରବାହିତ ହୋଇଛି, ଏବଂ ସେ ଦେଶର କଳା ଓ ସାହିତ୍ୟ ଯେଉଁ ଯେଉଁ ସ୍ତର ଦେଇ ସମସାମୟିକ ଅବସ୍ଥାରେ ପହଞ୍ଚିଛି, ଆମ ଦେଶରେ ସେ ପ୍ରକାର ପରିସ୍ଥିତି ଦେଖା ଦେଇ ନାହିଁ । ତେଣୁ ଯାହା ପାରିପାର୍ଶ୍ୱିକ ପରିସ୍ଥିତିରୁ ସହଜରେ ଜାତ ହୋଇ ନାହିଁ, ତାହା ଆପଣାର ମନେ ନ ହେବା ସ୍ୱାଭାବିକ, ଏଲିଏଟଙ୍କ ଓ୍ୱେଷ୍ଟ ଲାଣ୍ଡର ଯୁଗଯନ୍ତ୍ରା ବା ଏଜରା ପାଉଣ୍ଡଙ୍କ ବୌଦ୍ଧିକ ବିଚାର ସେଥିରେ ନଥିବାରୁ, ତାହା ନିଷ୍ପ୍ରାଣ ନକଲ ପରି ମନେ ହେଉଛି ।''

ଅଧ୍ୟାପକ ଗୋଲକ ବିହାରୀ ଧଳ ଆହୁରି ଏକ ମନ୍ତବ୍ୟ ଦେଇଥିଲେ :—

ଜଣେ ବିଶିଷ୍ଟ ସାହିତ୍ୟ ସେବୀ ତଥା ବୟସ୍କ ଅଧ୍ୟାପକ ଥରେ ଏକ ପତ୍ରିକାରେ ପ୍ରକାଶିତ କେତେ ଗୁଡ଼ିଏ ଆଧୁନିକ କବିତା ନେଇ ଜଣେ ବିଶିଷ୍ଟ ଆଧୁନିକ କବିଙ୍କ ପାଖକୁ ଯାଇ ସେଗୁଡ଼ିକ ବୁଝାଇ ଦେବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ । ମାତ୍ର କବି ଘଣ୍ଟାଧିକ କାଳ ଗଳଦ୍‌ଘର୍ମ ହୋଇ ଶେଷରେ ସେ ଭଲ ଭାବରେ ବୁଝି ପାରୁ ନାହାନ୍ତି ବୋଲି କହିଲେ । ଏହିପରି ଦୁଇ ଜଣ ଉଚ୍ଚକୋଟିର କବି ଓ ପାଠକଙ୍କ

ମଧ୍ୟରେ ଯଦି ଏ ପ୍ରକାର ଦୁର୍ଯୋଗ ଘଟେ, ତେବେ ଆଧୁନିକ କବିତାର ଭବିଷ୍ୟତ ସମ୍ପର୍କରେ ସନ୍ଦିହାନ ହେବା ଅସ୍ୱାଭାବିକ ନୁହେଁ ।"

ଏ ପ୍ରକାର ଏକ ଅନୁଭୂତି କେତେତ ବର୍ଷ ତଳେ ଏହି ଲେଖକର ମଧ୍ୟ ହୋଇଥିଲା । 'ଝଙ୍କାର'ରେ ପ୍ରକାଶିତ ଏକ କବିତା ସମ୍ପର୍କରେ ନିଜେ ଉଚ୍ଚକୋଟିର କବି ଓ ଲେଖକ ହୋଇଥିବା ଜଣେ ଓଡ଼ିଆ ଅଧ୍ୟାପକ; ଜଣେ ବିଶିଷ୍ଟ ଗାଳ୍ପିକ ତଥା ସମାଲୋଚକ, ଓଡ଼ିଆରେ ଏମ୍. ଏ. ଡିଗ୍ରୀ ଧାରିଣୀ ତାଙ୍କର ପତ୍ନୀ ଏବଂ ଏହି ଲେଖକ ଏକତ୍ର ଆଲୋଚନା ପାଇଁ ପ୍ରବୃତ୍ତ ହୋଇଥିଲୁ । କବିତାଟି ପ୍ରଥମେ ଆମୂଳଚୂଳ ପଢ଼ି ଦିଆଗଲା । 'ଝଙ୍କାର'ରେ ପ୍ରାୟ ତିନି ପୃଷ୍ଠାର କବିତା, ଗୋଟିଏ ଜଣ ଯାକ ତାପରେ ସେଥିରୁ କଅଣ କିଏ ରସ ଗ୍ରହଣ କଲେ, ପରସ୍ପରକୁ ପଚାରିଲୁ । ତାପରେ ମିଳିତ ଭାବେ କବିତାଟିର ପ୍ରତି ଧାଡ଼ି ବୁଝିବା ପାଇଁ ଚେଷ୍ଟା କଲୁ । ପ୍ରଥମ ତିନି ବା ଚାରି ଧାଡ଼ି ପର୍ଯ୍ୟନ୍ତ ବହୁ କଷ୍ଟରେ ଅଗ୍ରସର ହେବା ପରେ, ସେ ଦୁରୂହ ପ୍ରୟାସରୁ ନିରସ୍ତ ହେଲୁ । ଆଉ ଆଲୋଚନା କରିବା ସାମର୍ଥ୍ୟ ଆମର ନଥିଲା ।

ଏହି ଲେଖକ ଏକଦା ଜଣେ ପ୍ରବୀଣ ଇଂରେଜୀ ଅଧ୍ୟାପକଙ୍କ ସହିତ ଆଧୁନିକ ଓଡ଼ିଆ କବିତା ସମ୍ପର୍କରେ ଆଲୋଚନା କରୁଥିଲା । ଅଧ୍ୟାପକ ମହାଶୟ ମନ୍ତବ୍ୟ ଦେଇଥିଲେ କି ସେ ଆଧୁନିକ ଇଂରେଜୀ କବିତା ବୁଝି ପାରୁଛନ୍ତି, କିନ୍ତୁ ଆଧୁନିକ ଓଡ଼ିଆ କବିତାର କୌଣସି ଆଦି ଅନ୍ତ ପାଉ ନାହାଁନ୍ତି ।

ଆଉ କେତେକ ପାଠକଙ୍କ ଠାରୁ ଶୁଣିବାକୁ ମିଳେ, ଲୋକେ 'ସ୍ପାନ୍' ବା ଅନ୍ୟ ଇଂରେଜୀ ପତ୍ର ପତ୍ରିକାରେ ପ୍ରକାଶିତ ଆଧୁନିକ ଆମେରିକୀୟ କବିତାର ରସାସ୍ୱାଦନ କରି ପାରୁଛନ୍ତି, କିନ୍ତୁ ଓଡ଼ିଆ କବିତାର କାହିଁକି ନୁହେଁ ?

ଅଧ୍ୟାପକ ବେଣୁଧର ରାଉତ କହନ୍ତି :— ସମଗ୍ରତଃ, ଆମର ସାଂପ୍ରତିକ ସାହିତ୍ୟ ଚେତନା ପ୍ରସଙ୍ଗରେ କୁହାଯାଇ ପାରେ ଯେ ଆମର

ବାକ୍‌ସ୍ରଷ୍ଟା ମାନଙ୍କର ମାନସରେ ଦାସତ୍ୱ ପ୍ରବୃତ୍ତି ଉଭେଇ ଯାଇଛି ଓ ସମ୍ୟକ୍ ବଢ଼ି ଯାଇଛି, ଶ୍ୱେତାଙ୍ଗ ମାନେ ଆମ ଦେଶ ଛାଡ଼ି ଚାଲି ଯାଇଥିବା ସତ୍ତ୍ୱେ, ଏତିକି ବିବେଚନା କରାଯାଇ ପାରେ, ଜାପାନ ଭଳି ଆମ ଆଖି ପାଖର ଦେଶ ଓ ପୁଣି ପାଶ୍ଚାତ୍ୟ ପ୍ରଭାବରୁ ମୁକ୍ତ ହୋଇ ଉଚ୍ଚ ସାହିତ୍ୟ ସୃଷ୍ଟି କରି ପାରୁଛନ୍ତି ! ଆମର ନିଜସ୍ୱ ଯେପରି ଶୂନ୍ୟତା, ମାନସିକ ଦାସତ୍ୱ, ବେଦନା ଓ ସମ୍ବେଦନାର ଅଭାବ, ଏବଂ ଏହାହିଁ ଯେମିତି ଆମ ସାମ୍ପ୍ରତିକର ଲକ୍ଷଣ । ବହୁ କାଳ ବ୍ୟାପୀ ଅବକ୍ଷୟୀ ଉଚ୍ଛିନ୍ନ ସୀମା ମଧ୍ୟରୁ ଆମର ମୁକ୍ତି ଦରକାର । କିନ୍ତୁ ଏଥି ପାଇଁ ବ୍ୟାକୁଳତା କାହିଁ ?

ଶ୍ରୀ ଦୁର୍ଗା ମାଧବ ମିଶ୍ର :— ମୋଟ ଉପରେ ଦେଖିବାକୁ ଗଲେ, ଓଡ଼ିଆ କବିତା ରାଜ୍ୟରେ ଏକ ଅନିର୍ଦ୍ଦିଷ୍ଟ ସମୟ ଆସି ପହଞ୍ଚିଛି । ଅନେକ ପ୍ରକାର ପରୀକ୍ଷା ନିରୀକ୍ଷା ଚାଲିଛି । କାଳର କରାଳ କଷଟୀ ନିକଷରେ କିଏ ତିଷ୍ଠିବ, କିଏ ଧ୍ୱଂସ ପାଇବ କହିବା ମୁସ୍କିଲ, ଖୁଦ କିଏ, କୁଣ୍ଡା କିଏ, ତାହା ପରେ ନିଶ୍ଚୟ ଜଣା ପଡ଼ିବ । କିନ୍ତୁ ଇସପଙ୍କ କାହାଣୀର ଅଦୃଶ୍ୟ ପୋଷାକ ଆଉ କେତେଦିନ ପିନ୍ଧି ଆମ୍ଭମାନଙ୍କୁ ଭଲ ପୋଷାକ ବୋଲି କହିବାକୁ ପଡ଼ିବ, ତାହା ଦେଖିବାକୁ ବାକି ରହିଲା ।”

ଏ ପ୍ରକାର ମନ୍ତବ୍ୟ ମାନଙ୍କର ତାଲିକା ବୃଦ୍ଧି କରିବାକୁ ଚାହୁଁ ନାହିଁ । ଯେଉଁ ମାନେ ଆଧୁନିକ କବି, ଆଧୁନିକ କବିତାର ପକ୍ଷ ସମର୍ଥନରେ ସେମାନଙ୍କର ଅନେକ ଯୁକ୍ତି ମଧ୍ୟ ଅବଶ୍ୟ ମିଳିବ ।

ଏ ସବୁ ମନ୍ତବ୍ୟ ଉଦ୍ଧାର କରାଯିବାର ଉଦ୍ଦେଶ୍ୟ ନୁହେଁ, ଆଧୁନିକ କବିତାର ନିନ୍ଦାବାଦ କରିବା । ଆଧୁନିକ କବିତାର ଭବିଷ୍ୟତ ପରିପ୍ରେକ୍ଷୀରେ ଏହିସବୁ ଉକ୍ତିର ତାତ୍ପର୍ଯ୍ୟ ଓ ଗୁରୁତ୍ୱ କଅଣ, ତାହାହିଁ ବିଚାର କରିବା କଥା ।

ଉପରୋକ୍ତ ମନ୍ତବ୍ୟ ମାନଙ୍କରୁ ଗୋଟିଏ କଥା ସ୍ପଷ୍ଟ ହୁଏ । ତାହା ହେଲା, ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟ ସମ୍ପର୍କୀୟ ଏବଂ

ବଡ଼ ଅଭିଯୋଗ ହେଉଛି, ସେଥିର ନିର୍ମୂଳତା, root less ness, ଦ୍ୱିତୀୟ ହେଉଛି—ସେଥିର ପ୍ରାଣ ହୀନତା, କାବ୍ୟିକ ଆବେଦନର ଅଭାବ । ଏ ସବୁ ଅଭିଯୋଗ ସେ ନିତାନ୍ତ ସମର୍ଥକ ନୁହେଁ, ପ୍ରତ୍ୟେକ ପାଠକ ସେ ବିଷୟରେ ସଚେତନ । ଏପରି ଏକ ନିର୍ମୂଳତା ମଧ୍ୟରେ ଭବିଷ୍ୟତ ପାଇଁ ସ୍ଥିତି କିଅଣ କଳନା କରାଯାଇ ପାରେ ।

ଅବଶ୍ୟ ଅଧ୍ୟାପକ ବିଧୁ ଭୂଷଣ ଦାସଙ୍କ ଭଳି ଚିନ୍ତାଶୀଳ ବ୍ୟକ୍ତି ମାନେ ଆଶୀର୍ବାଦ ଓ ଉତ୍ସାହଭରି ସହ ମଧ୍ୟ ପ୍ରକାଶ କରିଛନ୍ତି ।

ଅଧ୍ୟାପକ ବିଧୁଭୂଷଣ ଦାସଙ୍କ ମତରେ; ସାଂପ୍ରତିକ ଓଡ଼ିଆ କାବ୍ୟ ସାହିତ୍ୟ କୌଣସି ଗୋଟିଏ ଆଲୋଚ୍ୟ ନୁହେଁ, ସେ ସାହିତ୍ୟକୁ ମାନସିକ ଦୁର୍ବଳତା ବା ବିକଳତାର ନିଦର୍ଶକ ବୋଲି କହିବା ଠିକ୍ ନୁହେଁ ।

କିନ୍ତୁ ତତ୍ ସଙ୍ଗେ ସଙ୍ଗେ ସେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ପ୍ରତି ଦୃଷ୍ଟି ଆକର୍ଷଣ କରନ୍ତି । ତାହା ଯେପରି କି ଏକ ସତର୍କବାଣୀ । ସେ କହିଛନ୍ତି, ନୂତନ ପରୀକ୍ଷା ମଧ୍ୟରେ ଲେଖକ ଆତ୍ମ କୈନ୍ଦ୍ରିକ ହେବା ସ୍ୱାଭାବିକ । ସାଂପ୍ରତିକ ଲେଖକ ଗୋଷ୍ଠୀର ବୌଦ୍ଧିକ ସ୍ତର ଓ ପାଠକର ବୌଦ୍ଧିକ ସ୍ତର ସମାନ ନୁହେଁ । ନିକଟ ଭବିଷ୍ୟତରେ ଏହି ସ୍ତର ସମାନ ହେବା ତ ଦୂର କଥା, ନିକଟବର୍ତ୍ତୀ ହେବାର ସମ୍ଭାବନା ମଧ୍ୟ ନାହିଁ ।

ଏହି ଉକ୍ତିରେ ଅଧ୍ୟାପକ ଦାସ ପାଠକ ଓ ଲେଖକଙ୍କ ବ୍ୟବଧାନ ସମ୍ପର୍କରେ ଯେଉଁ ସତ୍ୟର ଅବତାରଣା କରିଛନ୍ତି, ତା ଭବିଷ୍ୟତ ପାଇଁ ମଧ୍ୟ ଏକ ସତ୍ୟକୁ ପ୍ରକଟିତ କରେ ।

ଆମର ସାକ୍ଷର ସଂଖ୍ୟା ଶତକଡ଼ା ପ୍ରାୟ ୨୬ । ତା ଭିତରେ ପ୍ରକୃତ ଶିକ୍ଷିତ ସଂଖ୍ୟା କେତେ ? ସେମାନଙ୍କ ମଧ୍ୟରେ ପୁଣି କବିତା ମୋଦୀଙ୍କ ସଂଖ୍ୟା କେତେ ଏହି କବିତାମୋଦୀ ମାନଙ୍କ ମଧ୍ୟରୁ

ଆଧୁନିକ କବିତାର ଗ୍ରାହକ ସଂଖ୍ୟା କେତେ ? ସାଧାରଣ ବୁଦ୍ଧିଜୀବୀ ମାନଙ୍କ ମଧ୍ୟରେ ଆଧୁନିକ କବିତା ପ୍ରତି ଯେଉଁ ବିମୁଖତା, ତାହା ମଧ୍ୟରେ ଏହି ସାହିତ୍ୟର ଗ୍ରାହକ ପରିସର ସଂକୁଚିତ ହୋଇ ଚାଲିଥିବା ଆଶଙ୍କା ହୁଏ । ଏବଂ ତରୁଣଙ୍କର ପୀଢ଼ି ମଧ୍ୟରେ କାବ୍ୟ ଚେତନାର ଅଭାବ, ତାହା ମଧ୍ୟ ଏକ ଭାବନାର ବିଷୟ । ଏବର ପ୍ରତିଷ୍ଠିତ ଆଧୁନିକ କବି ଯେଉଁ ମାନେ, ସେମାନଙ୍କର ପ୍ରାୟ ସମସ୍ତଙ୍କର ବୟସ ପଞ୍ଚାଶୋତ୍ତର । ସେମାନେ ଭାବୀ ବଂଶଧରଙ୍କ ପାଇଁ ପୂର୍ବସୂରୀରେ ପରିଣତ ହୋଇ ଉଠିଲେଣି । କିନ୍ତୁ ନୂତନ ପୀଢ଼ିର କବି କାହାନ୍ତି ? କେତେଜଣଙ୍କ ନାମ ଆଲୋଚନା ମଧ୍ୟକୁ ଆସୁଛି ।

ଅଧ୍ୟକ୍ଷ ବିଲୋଚନ ମିଶ୍ର କହନ୍ତି :—ମନେ ରଖିବାକୁ ହେବ, କବିତା ପ୍ରମୋଦ ଉଦ୍ୟାନର ନିର୍ମୂଳୀ ପୁଷ୍ପ ନୁହେଁ, କିମ୍ବା ନନ୍ଦନ କାନନର ପାରିଜାତ ନୁହେଁ । ଏହା ପରିଶ୍ରମୀ ପୁଷ୍ଟ କୌଣସି ସଚେତନ ଦ୍ରଷ୍ଟାର କାବ୍ୟାନୁଭୂତିରୁ ବିକଶିତ ଜୀବନ ବୋଧର ଏକ କନ୍ଦନିକ ଫଳ । × × ×
କବିତା ଅନୁଭୂତ ସତ୍ୟ ମୂଳକ ସ୍ପନ୍ଦନ କରେ ।

ଆମ ଆଧୁନିକ କବିତା ମାନଙ୍କରେ ଏହି ଜୀବନବୋଧ କେତେ ଦୂର ପ୍ରତି ଫଳିତ ? ଅନୁଭୂତ ସତ୍ୟର ସ୍ପନ୍ଦନ କାହିଁ ? ଜୀବନ ବୋଧ ଯଦି ଥାଆନ୍ତା, ତାହା ପାଠକ ମହଲରେ ଅବୋଧ୍ୟ ହୁଅନ୍ତା କାହିଁକି ?

ବିଖ୍ୟାତ ଲେଖକ ଶ୍ରୀ ଅନ୍ନଦା ଶଙ୍କର ରାୟଙ୍କ ଏକ କଥା ମନେ ପଡ଼େ । "ନିଜକୁ ଚିହ୍ନି, ନିଜ କଥା ଲେଖି ଯାନ୍ତୁ, ଏହାଠାରୁ ବଡ଼ ସାଧନା ଆଉ କଅଣ ଅଛି ?"

ଆମର ଅଧୁନାତନ କବି ମାନଙ୍କ ମଧ୍ୟରୁ କେତେ ଜଣ ନିଜକୁ ଚିହ୍ନିବା ପ୍ରୟାସ କରିଛନ୍ତି ? ତାଙ୍କ ନିଜ କଥା କେଉଁଠାରେ ଲେଖିଛନ୍ତି ?

ନିଜକୁ ଚିହ୍ନି, ନିଜ କଥା ଲେଖିବାର ଆନ୍ତରିକତା ଥିଲେ, ତାହା ଆପେ ଆପେ ଅନ୍ୟ ମାନଙ୍କ କଥା ହୋଇଯିବ, ଅନ୍ୟ ବହୁ

ଲୋକଙ୍କ ଚିତ୍ତ ସ୍ପର୍ଶ କରିବ । କାରଣ ବାହ୍ୟତଃ ବୌଦ୍ଧିକ ଓ ଅନ୍ୟାନ୍ୟ ସ୍ତରର ବହୁ ପାର୍ଥକ୍ୟ ସତ୍ତ୍ୱେ, ମନୁଷ୍ୟ ମନୁଷ୍ୟର ଅନ୍ତଃ ସ୍ପନ୍ଦନ କ୍ଷେତ୍ରରେ କେଉଁଠି ବା କେଉଁଠି ସାମଞ୍ଜସ୍ୟ ନିଶ୍ଚୟ ଥାଏ ।

କବି ମାୟାଧର ମାନସିଂହଙ୍କ ଭାଷାରେ, କବିତା ପ୍ରାଣରୁ ବାହାରିବା ଜିନିଷ ।

ତେଣୁ କେଉଁଠି ପ୍ରାଣରେ ସ୍ପର୍ଶ ନଥାଏ, କବିତା ଆଉ ଯାହା ହେଉନା କାହିଁକି, ଉତ୍ସୋତ୍ତୀର୍ଣ୍ଣ କାବ୍ୟ ସାହିତ୍ୟ ସ୍ତରକୁ ଉଠି ନପାରେ ।

ପ୍ରକାଶକ ମାନଙ୍କ ସହିତ ଏହି ଲେଖକର ଘନିଷ୍ଠ ଯୋଗା-ଯୋଗ ଅଛି । କବିତା ବହି ଛାପିବାକୁ ସେମାନେ ଡରୁଛନ୍ତି । ବିକ୍ରୀ ହେଉ ନାହିଁ, ଅବଶ୍ୟ କବିତା ବହି ଯେ ଲୋକେ ଛାପୁ ନାହାନ୍ତି, ତାହା ନୁହେଁ । ବେଶ୍ ଅର୍ଥ ବ୍ୟୟ କରି ଅନେକ ବହି ଛାପୁଛନ୍ତି । ପ୍ରକାଶନ ଶିଳ୍ପର ଆଭିଜାତ୍ୟର ପ୍ରତୀକ ଭାବେ ସେମାନେ ତାହା ଛାପନ୍ତି । ଅନ୍ୟାନ୍ୟ ଅନେକ ବାହ୍ୟ କାରଣ ମଧ୍ୟ ଅନ୍ତର୍ନିହିତ । ତାହା ମଧ୍ୟରେ ମିଶ୍ରିତ ହେଉଛି କୁଣ୍ଠା', ଆଶଙ୍କା, ଯାହା ସେମାନଙ୍କ ସହିତ କଥାବାର୍ତ୍ତାରୁ ସ୍ପଷ୍ଟ ହୁଏ ।

ବର୍ତ୍ତମାନ ଆମ କାବ୍ୟ ସାହିତ୍ୟ କ୍ଷେତ୍ରରେ ଆଉ ଏକ ବିଚିତ୍ର ପ୍ରକ୍ରିୟା ମଧ୍ୟ ଦେଖିବାକୁ ମିଳୁଛି । ଯାହା କିଛି ବର୍ଷ ତଳ ପର୍ଯ୍ୟନ୍ତ ଅପାଂକ୍ତେୟ ଥିଲା, ସେ ପ୍ରକାର ପ୍ରାଚୀନ ରୀତିର କାବ୍ୟ କବିତାର ପ୍ରକାଶ ଏହା ମଧ୍ୟରେ ବହୁଳ ଭାବରେ ଦେଖା ଦେଇଛି, କବିତା ପାଠୋତ୍ସବ ମାନଙ୍କରେ ମଧ୍ୟ ସେ ପ୍ରକାର କବି ମାନେ ଅବାଧରେ କବିତା ପଢୁଛନ୍ତି ଓ କେତେକ କ୍ଷେତ୍ରରେ ବାହାବା ମଧ୍ୟ ପାଉଛନ୍ତି । କଲେଜସ୍ତରୀୟ ପ୍ରତିଯୋଗିତା ମାନଙ୍କରେ ମଧ୍ୟ ଏହି ଲେଖକ ସେ ପ୍ରକାର କବିତା ମାନ ଦେଖିବାକୁ ପାଇଛି । ଏହା ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଭବିଷ୍ୟତ ଓ ଉତ୍ତରଣ ପକ୍ଷରେ କେଉଁ ଲକ୍ଷଣ ବହନ କରେ, ତାହା ଗବେଷକଙ୍କ ବିଚାରର ବିଷୟ ।

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଏହି ନୈରାଶ୍ୟଜନକ ପରିସ୍ଥିତି ପାଇଁ କିଏ ଯେ ଦାୟୀ, ସେଥିର ବିଶ୍ଳେଷଣ ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । ମୋଟ କଥା ହେଉଛି, ଭବିଷ୍ୟତ ପାଇଁ ଏହା ଏକ ଅନିଶ୍ଚିତତାର ଚିହ୍ନ ଦେଉଛି ।

ସଭ୍ୟତାର ଅଗ୍ରଗତି ସହିତ କବିତାର ଅବନତି, ଏହି ଆପ୍ତ ବାକ୍ୟ କଅଣ ଆମ ସାହିତ୍ୟରେ ପ୍ରତିଫଳିତ ହେବାକୁ ଯାଉଛି ? କିନ୍ତୁ ଏହି ସବୁ ବାକ୍ୟକୁ ସତ୍ୟ ସାବ୍ୟସ୍ତ କରିବା ପାଇଁ ସଭ୍ୟତାର ତଥା କଥିତ ଅଗ୍ରଗତି ଆମ ସମାଜରେ ହୋଇଛି କି ?

କାବ୍ୟ ସାହିତ୍ୟର ଭବିଷ୍ୟତ, ଏହା ଏକ ଦୁରୂହ ବିଷୟ ବସ୍ତୁ ।

ଏଠାର ଆଲୋଚନା ଚକ୍ରରେ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟ ସମ୍ବନ୍ଧ ଦୁଇ ପର୍ଯ୍ୟାୟ ଆଲୋଚନାର ପ୍ରଥମ ପର୍ଯ୍ୟାୟର ପାଞ୍ଚୋଟି ବିଷୟ ବସ୍ତୁ ମଧ୍ୟରେ ମୋ ବିଷୟବସ୍ତୁଟି ଶେଷ । ପ୍ରଥମ ଚାରୋଟି ବିଷୟ ବସ୍ତୁ ଯଥା:— ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଉନ୍ମେଷ ଓ ଉତ୍ତରଣ, ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଆତ୍ମିକ, ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଆଙ୍ଗିକ ଏବଂ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଅବୋଧତା ଓ ଅସଲଗ୍ନତା, ଏହି ଗୁଡ଼ିକ ଉପରେ ପ୍ରବନ୍ଧ ପାଠ ପାଇଁ ଯେଉଁ ମାନଙ୍କୁ ସୁଯୋଗ ଦିଆ ଯାଇଛି, ସେମାନଙ୍କ ପ୍ରତି ମୋର ଈର୍ଷା ଜାତ ହେବା ସ୍ୱାଭାବିକ । କାରଣ ସେମାନଙ୍କ ଆଗରେ ବିଷୟ ବସ୍ତୁ ପାଇଁ ବିପୁଳ ଉପାଦାନ ରହିଛି, ବଳିଷ୍ଠ ଭିତ୍ତି ଭୂମି ରହିଛି । କିନ୍ତୁ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଭବିଷ୍ୟତ, ଏ ବିଷୟ ବସ୍ତୁଟିର ଆଲୋଚନା କେବଳ ଅନ୍ଧାରରେ ବାଡ଼ି ବୁଲାଇବା ଢଙ୍ଗ ସମାନ । ଏପରି ଏକ ଅଯୁକ୍ତିକର ଏବଂ ଯାହା ଲେଖିଲେ ମଧ୍ୟ ବିବାଦୀୟ ହେବାର ଆଶଙ୍କା ବହନ କରୁଥିବା ବିଷୟ ବସ୍ତୁ ଯେ ସାହିତ୍ୟ ଏକାଡେମୀ କର୍ତ୍ତୃପକ୍ଷ କାହିଁକି ବିଚାର ଏହି ଲେଖକଟି ଉପରେ ନ୍ୟସ୍ତ କରିବାକୁ ସ୍ଥିର କଲେ, ତାହା ବୁଝି ହେଉ ନାହିଁ ।

ସେ ଯାହା ହେଉ, ଏହାକୁ ଏକ ଗୌରବ ମନେକରି ଲେଖକ ନିଜମସ୍ତକରେ ବିଷୟଟିକୁ ସ୍ୱୀକାର କରି ନେଇଛି ଏବଂ ତାର ମତାମତ ଅନ୍ୟାନ୍ୟ ସୁଧୀ ଆଲୋଚକଙ୍କ ବିଚାର ଉପରେ ଛାଡ଼ି ଦେଉଛି ।

ଆଧୁନିକ ଓଡ଼ିଆ କାବ୍ୟ ସମ୍ବନ୍ଧରେ ଭବିଷ୍ୟତ କଥା ଚିନ୍ତା କରିବାକୁ ଯିବାବେଳେ, ସ୍ୱଭାବତଃ ଅନ୍ୟାନ୍ୟ ସାହିତ୍ୟର ଗତି ଓ ପ୍ରକୃତି ପ୍ରତି ଦୃକ୍‌ପାତ କରିଯିବା ବାଞ୍ଛନୀୟ । ଦୁର୍ଭାଗ୍ୟ ବଶତଃ ଏ ଲେଖକ ସେ ଦିଗରୁ ନିତାନ୍ତ ଅନଭିଜ୍ଞ । ତଥାପି, ସାଂପ୍ରତିକ ଇଂରାଜୀ କବିତା ସଂପର୍କରେ କିଛି ଦିନ ତଳେ 'ଟାଇମ୍‌ସ ଅଫ ଇଣ୍ଡିଆ' କାଗଜରେ ପ୍ରକାଶିତ ଏକ ପ୍ରବନ୍ଧ ଲେଖକର ଦୃଷ୍ଟିକୁ ଆସିଥିଲା । ସେ ପ୍ରବନ୍ଧର ଲେଖକ ବହୁ ଉଦାହରଣ ସହିତ ଦର୍ଶାଇଥିଲେ କି ଇଂରେଜୀ ସାହିତ୍ୟର ତରୁଣତର କବିଙ୍କ ମଧ୍ୟରେ ପୁଣି ଏକ ପାରମ୍ପରିକ ଦୃଷ୍ଟିଭଙ୍ଗୀ, ଓ୍ୱାର୍ଡସ୍ ଓ୍ୱାର୍ଥୀୟ ଯୁଗକୁ ଫେରି ଯିବାର ପ୍ରବଣତା ପ୍ରକାଶ ପାଇଛି ।

ମୁଁ ଆଧୁନିକ ପାଶ୍ଚାତ୍ୟ କବିତା ବିଶେଷ ପଢ଼ିବା ସୁଯୋଗ ପାଇନାହିଁ । କିନ୍ତୁ ବିଭିନ୍ନ ପତ୍ର ପତ୍ରିକା ଜରିଆରେ ଯେଉଁ କେତୋଟି ପଢ଼ିଛି, ସେଥିରେ ପ୍ରକୃତରେ ସ୍ୱରର ପରିବର୍ତ୍ତନ ଲକ୍ଷ୍ୟ କରିଛି, କିଛି ବର୍ଷ ତଳର ଉଦଗ୍ରତା ପରିବର୍ତ୍ତେ ଏକ ଶାନ୍ତ ସମାହିତ ଚେତନା ପୁନର୍ବାର ପାରମ୍ପରିକତା ପ୍ରତି ଆଗ୍ରହ ସେ କବିତା ଗୁଡ଼ିକରେ ପ୍ରତିଫଳିତ ।

ଯେପରି କି ଆମେରିକୀୟ କବି ଗ୍ୟାଲୱେ କିନେଲଙ୍କ ସମ୍ପର୍କରେ ଏହି ମନ୍ତବ୍ୟ :—

"One turns to kinnel with a sense of relief, one feels assured that one has entered a same world, where communication, how ever imperfect, is possible."

ଆମ ପ୍ରତି ବେଶୀ ବଙ୍ଗଳା ସାହିତ୍ୟରେ ମଧ୍ୟ ସେହି ପ୍ରକ୍ରିୟା । ଓଡ଼ିଆ କବିତା କ୍ଷେତ୍ରରେ ମଧ୍ୟ ସଂପ୍ରତି ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ଦୀପକ ମିଶ୍ର ପ୍ରଭୃତିଙ୍କ କବିତାରେ ସେହି ସ୍ୱର ସୂଚନା ।

କିନ୍ତୁ ଏହାର ଅର୍ଥ ନୁହେଁ ଯେ ପୁଣି ପୁରୁଣା ଯୁଗକୁ ଫେରି ଯିବାକୁ ହେବ କିମ୍ବା ପୁରୁଣା ଆଙ୍ଗିକ ଓ ଆତ୍ମିକକୁ ବରଣ କରି-ନେବାକୁ ପଡ଼ିବ । ଯୁଗଧର୍ମ ଅନୁଯାୟୀ ଆଗକୁ ପାଦ ବଢ଼ାଇବାକୁ ହେବ — ଚରୈବେତି ତାହା ନ ହେଲେ ସାହିତ୍ୟ ସ୍ଥାଣୁ ହୋଇଯିବ । ଆଙ୍ଗିକ ଓ ଆତ୍ମିକର ନୂତନ ପରୀକ୍ଷା ମଧ୍ୟରେ ନୂତନ ଚିନ୍ତା ଚେତନାର ଆବିଷ୍କାର ଅବଶ୍ୟ କରଣୀୟ । କିନ୍ତୁ କରିବ କିଏ ?

ଆଉ ଏକ କଥା ଆମର ଆଧୁନିକ କାବ୍ୟ ସାହିତ୍ୟ ମୁଖ୍ୟତଃ ପାଶ୍ଚାତ୍ୟ କାବ୍ୟ ଚେତନା ଦ୍ୱାରା ପ୍ରଭାବିତ । ରୁଷ୍ ସମେତ ପୂର୍ବ ୟୁରୋପୀୟ ରାଷ୍ଟ୍ର ମାନଙ୍କର ଏବଂ ଚୀନ, ଜାପାନ ପ୍ରଭୃତି ରାଷ୍ଟ୍ରର ସାହିତ୍ୟ ଓ କାବ୍ୟ କ୍ଷେତ୍ରର ଗତି ଓ ପ୍ରକୃତି ପ୍ରତି ଆମେ ସାଧାରଣତଃ ସଚେତନ ନୋହୁଁ ? ଆମ ଆଲୋଚନା ମାନଙ୍କରେ ସେ ପ୍ରସଙ୍ଗର ଅବତାରଣା ଅତି କ୍ୱଚିତ୍ ଦେଖିବାକୁ ମିଳେ । ସେ କ୍ଷେତ୍ରରେ ଆମ ଦୌଡ଼ ଅତି ବେଶୀ ହେଲେ ମାଇକୋଭିସ୍କି ଙ୍କ ପର୍ଯ୍ୟନ୍ତ । ଆମ ଭବିଷ୍ୟତ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ ଅପେକ୍ଷା ପୂର୍ବ ୟୁରୋପୀୟ ବା ସାମ୍ୟବାଦୀ କାବ୍ୟ ଧାରାର ପ୍ରଭାବ ଯେ ଅଧିକ ଅନୁପ୍ଲୁତ ନ ହେବ, କିଏ କହିବ ?

ଓଡ଼ିଆରେ ଗଣଚେତନା ମୂଳକ କବିତା ସଂପ୍ରତି ଯାହା ପ୍ରକାଶ ପାଉଛି, ତାହାର ସଂଖ୍ୟା ବେଶୀ ନୁହେଁ । କବି ସଂଖ୍ୟା ମାତ୍ର ଜଣେ ଦୁଇ ଜଣ, ଆଧୁନିକ କବିତା ସଂକ୍ରାନ୍ତ ଆଲୋଚନା ବେଳେ ସେମାନଙ୍କ ପ୍ରସଙ୍ଗ ଅତି କ୍ୱଚିତ ଦସ୍ତୁରକୁ ଆସିଥାଏ ।

ଏହା ଛଡ଼ା ଜନଗଣଙ୍କ ପାଇଁ କବିତା, ତାହା ମଧ୍ୟ ଏକ ସମସ୍ୟା ।

ମୋଟ ଉପରେ କେବଳ କବିତା ନୁହେଁ, ଆମର କାବ୍ୟ କ୍ଷେତ୍ରରେ ବର୍ତ୍ତମାନ ଯେପରି ଧାରାରେ ଗତି କରୁଛି, ମନେ ହେଉଛି ସେପରି ଆମର ନିରକ୍ଷର ବା ଅଳ୍ପ ଶିକ୍ଷିତ, ଗ୍ରାମବାସୀ, କୃଷୀ, ଶ୍ରମିକ ଓ ସାଧାରଣ ଜନତା, ଯେଉଁ ମାନଙ୍କ ସଂଖ୍ୟା ଶିକ୍ଷିତଙ୍କ ତୁଳନାରେ ବହୁ ସଂଖ୍ୟକ, ସେମାନଙ୍କର ସାହିତ୍ୟ ବଡ଼ଦାଣ୍ଡକୁ ଆସିବା ଅଧିକାର ନାହିଁ ।

ସେମାନଙ୍କର ମଧ୍ୟ ସେ ସାହିତ୍ୟ ପ୍ରତି ଅନୁରାଗ ରହିଛି, ରୁଚି ରହିଛି, ସେମାନଙ୍କର ମଧ୍ୟ ଯେ କାବ୍ୟ ଚେତନା ରହିଛି, ସାହିତ୍ୟ ଚେତନା ରହିଛି, ସେମାନଙ୍କ ଭିତରେ ମଧ୍ୟ ଯେ ରସ ବୋଧ ରହିଛି, ସେମାନେ କେବଳ ତଥା କଥିତ ବୌଦ୍ଧିକ ସ୍ତରର ନ ହୋଇଥିବା ଯୋଗୁଁ ତାହାକୁ ଉପେକ୍ଷା କରିବା କେତେ ଦୂର ସଂଗତ ହେଉଛି ? ଏ ପ୍ରଶ୍ନ ମଧ୍ୟ ସ୍ୱତଃ ଉଠେ ।

ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାଇ ତୃଷ୍ଣ ମନା
ହଳେ ଗାଏ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟ ରଙ୍ଗେ ବାରାଙ୍ଗନା ।

ଏହା କବି ଉପେନ୍ଦ୍ର ଭଞ୍ଜ ପ୍ରତି ଉଦ୍ଦିଷ୍ଟ ହୋଇଥିଲେ ମଧ୍ୟ, ପ୍ରକୃତରେ ଯେ ଉଚ୍ଚ କାବ୍ୟାଦର୍ଶ ବହନ କରେ, ତାହା କିଏଣ ଅସ୍ୱୀକାର କରି ହେବ ?

ସାହିତ୍ୟ ଯେ ସମସ୍ତଙ୍କ ସହଜବୋଧ ହେବ, ତାହା ନହେଁ, କିନ୍ତୁ ସେହି ସବୁ ନିରକ୍ଷର, ଅବହେଳିତ, ଅଶିକ୍ଷିତ, ସ୍ୱଳ୍ପଶିକ୍ଷିତ ଲୋକ ମଧ୍ୟ ଯେ ମନୁଷ୍ୟ, ସେମାନଙ୍କର ଅନ୍ତରର ଅନୁଭୂତି ଓ ଚେତନା ମଧ୍ୟ ଅଛି, ତାହା ଆମ ସାହିତ୍ୟରେ ବିଶେଷ କରି କାବ୍ୟ ସାହିତ୍ୟରେ ନ ଫୁଟିବ କାହିଁକି ? ଏବଂ ସେମାନଙ୍କ ପାଇଁ ସାହିତ୍ୟର କିଛି ଅବଦାନ ନ ରହିବ କାହିଁକି ?

କାବ୍ୟ ସାହିତ୍ୟର ଆଙ୍ଗିକରେ ପରୀକ୍ଷା ନିରୀକ୍ଷା ଚାଲି ପାରେ । କିନ୍ତୁ ଆତ୍ମିକ କାହିଁକି ପରିବର୍ତ୍ତନମାନ ନ ହେବ ?

କାବ୍ୟ ସାହିତ୍ୟର ଭବିଷ୍ୟତ କଅଣ ରୂପରେଖ ନେବ, ତାହା କହିବା ସହଜ ନୁହେଁ । ଆନ୍ତର୍ଜାତୀୟ କାବ୍ୟ ସାହିତ୍ୟ କେଉଁ ଧାରା ନେବ, କିଏ କହିବ ?

ତେବେ ଯେତେ ଦୂର ଜଣା ଯାଉଛି, ପାଶ୍ଚାତ୍ୟ କାବ୍ୟ ସାହିତ୍ୟ ଏ ପର୍ଯ୍ୟନ୍ତ ଟି. ଏସ୍. ଏଲିଏଟ ଓ ଏଜରା ପାଉଣ୍ଡ ପ୍ରଭାବରୁ ମୁକ୍ତ ହୋଇ ନାହିଁ, ଯଦିଓ ଟାଇମ୍ସ ଅଫ ଇଣ୍ଡିଆରେ ଚର୍ଚ୍ଚିତ ହେବା ଭଳି ଇଂଲଣ୍ଡର ନବତମ କବିଙ୍କ ମଧ୍ୟରେ ପରଂପରାବାଦୀ ଦୃଷ୍ଟି କୋଣ ପ୍ରକାଶ ପାଉଛି ।

ଏଠାରେ ଦେଖିବାର କଥା, ଟି. ଏସ୍. ଏଲିଏଟ ବା ଏଜରା ପାଉଣ୍ଡଙ୍କ ପରେ ପାଶ୍ଚାତ୍ୟ କାବ୍ୟ ସାହିତ୍ୟ କ୍ଷେତ୍ରରେ ସେପରି ଯୁଗାନ୍ତ ସୃଷ୍ଟିକାରୀ ଆଉ କୌଣସି ନେତୃତ୍ୱ ମୂର୍ତ୍ତି ଦେଖୁଛୁ କି ?

ଆନ୍ତର୍ଜାତୀୟ କାବ୍ୟ ସାହିତ୍ୟ ନୂତନ ଦିଗ୍‌ଦର୍ଶନ ପାଇଁ କାହାକୁ ଚାହିଁବ ? ତାହା କାହିଁକି ଭାରତ ଭୂମିରୁ ଦିଆ ନ ଯିବ ? ଏହି ଦିଗରେ ଓଡ଼ିଆ କାବ୍ୟ ସାହିତ୍ୟ କାହିଁକି ଉଚିତ ଭୂମିକା ଗ୍ରହଣ ନ କରିବ ?

ପ୍ରତୀକ, ଚିତ୍ର କଳ୍ପ, ବୌଦ୍ଧିକତା ଇତ୍ୟାଦି ଯାହା କୁହା ଯାଉଛି, ତାହା ଭାରତୀୟ କାବ୍ୟ କ୍ଷେତ୍ରରେ ମଧ୍ୟ ନୁହେଁ । ଏପରି କି ଆମ ଦେଶର ଆଦିବାସୀ ସଂପ୍ରଦାୟଙ୍କ ଗୀତ ଗୁଡ଼ିକରେ ସେଥିର ଭୂୟସୀ ଦୃଷ୍ଟାନ୍ତ ମିଳେ, ଯାହା ଓଡ଼ିଶାର ଅନ୍ୟତମ ଆଧୁନିକ କବି ଶ୍ରୀ ସୀତାକାନ୍ତ ମହାପାତ୍ର ବର୍ତ୍ତମାନ ବିଶ୍ୱ ଦରବାରରେ ପ୍ରତିପାଦିତ କରାଇବା ପାଇଁ ଯତ୍ନଶୀଳ ହୋଇଛନ୍ତି ।

ଏଣୁ, ଅଧ୍ୟାପକ ଚାରଣୀ ଚରଣ ଦାସ କହିବା ଭଳି, ଉତ୍ତାଳିକା ପ୍ରବାହରେ ଅନୁକରଣ କରିବା ଅପେକ୍ଷା ସମନ୍ୱୟ ଓ ମୌଳିକ ଅନ୍ୱେଷଣ ଦ୍ୱାରାହିଁ ଭାରତୀୟ କବିତା ବିଶ୍ୱସାହିତ୍ୟକୁ ତାର ପ୍ରକୃତ ଅବଦାନ ଦେଇ ପାରିବ ବୋଲି ଆଶା ।

ବସ୍ତୁତ ଆମ ପ୍ରତିଷ୍ଠିତ ଆଧୁନିକ କବି ମାନଙ୍କର ଦୃଷ୍ଟି କୋଣରେ ସ୍ୱାଗତଯୋଗ୍ୟ ପରିବର୍ତ୍ତନର ସୂଚନା ମିଳୁଛି । କବି ସୀତାକାନ୍ତ ଆଦିବାସୀ ସାହିତ୍ୟ ଆଡ଼କୁ ଦୃଷ୍ଟି ଫେରାଇଥିବା ବେଳେ, କବି ରମାକାନ୍ତ ରଥଙ୍କ ସାଂପ୍ରତିକ କେତେକ କବିତାରେ ଆଧୁନିକ ପରୀକ୍ଷା ନିରୀକ୍ଷାର କୁହେଳିକତା ବିନା ସରଳ, ସ୍ୱାଭାବିକ ଭାବ ସ୍ପନ୍ଦନ ଦେଖିବାକୁ ମିଳୁଛି । ନକେତେକ କବିତାରେ ମଧ୍ୟ ଦେଖିବାକୁ ମିଳୁଛି ଆଧ୍ୟାତ୍ମିକତାର ସ୍ୱର । ସମ୍ଭବତଃ ପାରମ୍ପରିକତା ଓ ନୂତନତ୍ୱର ଏକ ସମନ୍ୱୟ ପାଇଁ ଏକ ଆବେଗ ଏ କବିମାନଙ୍କ ମଧ୍ୟରେ ଜାଗ୍ରତ ହେଉଛି ।

ତେଣୁ ଭବିଷ୍ୟତ ପାଇଁ ସଂପୂର୍ଣ୍ଣ ନୈରାଶ୍ୟ ବାଦର ପ୍ରଶ୍ନ ନାହିଁ । ମହାଜାଗତିକ ଚେତନା ମଧ୍ୟରେ ଆମ ନିଜସ୍ୱ ଜୀବନ ବୋଧର ସମନ୍ୱିତ ପ୍ରକାଶ ଦ୍ୱାରା ଆମ କାବ୍ୟ ସାହିତ୍ୟ ଏକ ନୂତନ ମହିମାନ୍ୱିତ ରୂପରେଖ ଧାରଣ କରି ପାରେ ।

ତରୁଣତର ପିଢ଼ି ମଧ୍ୟରୁ ହୁଏତ ନୂଆ ପ୍ରତିଭା ବିକଶିତ ହୋଇ ଉଠିବ । ଭବିଷ୍ୟତ ଚିର ସମ୍ଭାବନା ମୟ । ବିଶ୍ୱ ସଂସ୍କୃତିର ସମନ୍ୱୟ ମଧ୍ୟରେ ଜନିତ ମୂଲ୍ୟବୋଧ ଦ୍ୱାରା କାବ୍ୟ ସାହିତ୍ୟ ନୂତନ ଉତ୍ତରଣ ଲାଭ କରିବ, ଏ ଆଶା ଅବାନ୍ତର ନୁହେଁ ।

---

ବାର୍ତ୍ତା ସଂପାଦକ
ସମାଜ
କଟକ-୧

ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ

# ସଂକଳନ ସମ୍ପର୍କରେ :

ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ୧୯୮୧ ମସିହା ଏପ୍ରିଲମାସ ଛ' ତାରିଖ ଓ ସାତ ତାରିଖ ଦୁଇଦିନ ବ୍ୟାପୀ ବାରିପଦା ଠାରେ ଓଡ଼ିଆ କାବ୍ୟ-ସାହିତ୍ୟ ବିଷୟକ ଏକ ଆଲୋଚନା-ଚକ୍ର ଅନୁଷ୍ଠିତ ହୋଇଥିଲା । ଏହି ସଂକଳନ ଅନ୍ତର୍ଭୁକ୍ତ ପ୍ରବନ୍ଧ ଗୁଡ଼ିକ ଉକ୍ତ ଆଲୋଚନା ଚକ୍ରରେ ବିଭିନ୍ନ ଅଧିବେଶନରେ ପଠିତ ହୋଇଥିଲା ।

ଏହି ଆଲୋଚନା-ଚକ୍ରରେ ଅଧ୍ୟାପକ ଚିନ୍ତାମଣି ବେହେରା ଓ ଅଧ୍ୟାପକ ହରପ୍ରସାଦ ପରିଚ୍ଛା ପଟ୍ଟନାୟକ ଯୋଗଦାନ କରି ଯଥାକ୍ରମେ "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଆତ୍ମିକ" ଓ "ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଅବୋଧତା ଓ ଅସଂଲଗ୍ନତା" ବିଷୟକ ସେମାନଙ୍କ ପ୍ରବନ୍ଧର ସାରାଂଶ ପାଠ କରିଥିଲେ ମଧ୍ୟ ଅନିବାର୍ଯ୍ୟ କାରଣ ବଶତଃ ସେମାନଙ୍କର ପ୍ରବନ୍ଧ ଏକାଡେମୀକୁ ପ୍ରଦାନ କରିବା ପାଇଁ ସମର୍ଥ ହୋଇପାରି ନଥିବାରୁ ସେମାନଙ୍କ ପ୍ରବନ୍ଧଗୁଡ଼ିକ ଏହି ସଂକଳନ ଭୁକ୍ତ ହୋଇପାରିଲା ନାହିଁ ।

ବିଶିଷ୍ଟ କବି ଅନନ୍ତ ପଟ୍ଟନାୟକ ଏହି ଆଲୋଚନା-ଚକ୍ର ଉଦ୍‌ଘାଟନ କରିଥିଲେ । ଏଥିପାଇଁ ଏକାଡେମୀ ତାଙ୍କପ୍ରତି କୃତଜ୍ଞତା ଜ୍ଞାପନ କରୁଛି ।

ଅଧ୍ୟାପକ ବସନ୍ତକୁମାର ଶତପଥୀ, ଅଧ୍ୟାପକ ରାଜକିଶୋର ମିଶ୍ର, କବି ଶ୍ରୀ ଉମାଶଂକର ପଣ୍ଡା, ଅଧ୍ୟାପକ ଫଣୀ ମହାନ୍ତି ଏହି ଆଲୋଚନା ଚକ୍ରର ଉଭୟ ଦିନ ପଠିତ ପ୍ରବନ୍ଧ ଗୁଡ଼ିକ ଉପରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଓ ସୁଚିନ୍ତିତ ମନ୍ତବ୍ୟ ପ୍ରକାଶ କରି ଆଲୋଚନା

ତହିଁର ବାତାବରଣକୁ ସରସ ଓ ଗ୍ରାହ୍ୟ କରିଥିଲେ । ଏକାଡ଼େମୀ ସେମାନଙ୍କ ପ୍ରତି କୃତଜ୍ଞ । ଆଲୋଚନା ଚକ୍ର ଆୟୋଜନରେ ମୟୂରଭଞ୍ଜ ଜିଲ୍ଲାପାଳ ଶ୍ରୀଯୁକ୍ତ ଧୀରେନ୍ଦ୍ରନାଥ ପାତ୍ରୀ ଏବଂ ବାରିପଦା ସାହିତ୍ୟ ସଂସଦର କର୍ମକର୍ତ୍ତାବୃନ୍ଦ ଏକାଡ଼େମୀ ସହିତ ଅକୁଣ୍ଠ ସହଯୋଗ କରିଥିବାରୁ ଏ ଅବସରରେ ଏକାଡ଼େମୀ ସେମାନଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରୁଛି ।

**କୈଳାସବିହାରୀ ଦାସ**

ସହକାରୀ ସଂପାଦକ

ଓଡ଼ିଶା ସାହିତ୍ୟ ଏକାଡ଼େମୀ